# ନୂତନ-ଜଗନ୍ନାଥାଷ୍ଟକମ୍



ରଚୟିତା
ଉତ୍କଳ-ବାଚସ୍ପତି
ପ୍ରୋଫେସର୍ ଗୌରୀକୁମାର ବ୍ରହ୍ମା-କବକୋକଳ

★ ପୁସ୍ତକର ନାମ— **ନୂତନ-ଜଗନ୍ନାଥାଷ୍ଟକମ୍**

★ ଲେଖକ— **ଅଧ୍ୟାପକ ଗୌରୀକୁମାର ବ୍ରହ୍ମା**
ଭୁବନେଶ୍ୱର- ୨

★ ପ୍ରକାଶକ— **ପ୍ରଫେସର୍ ଶିତିକଣ୍ଠ ମିଶ୍ର,**
ବୀରନରସିଂହପୁର ଶାସନ, ପୁରୀ

★ ପ୍ରଥମ ସଂସ୍କରଣ— ୧୯୯୧ ( ୫୦୦ ଖଣ୍ଡ )

★ ମୁଦ୍ରଣ— ବୁଦ୍ଧେଶ୍ୱରୀ ପ୍ରେସ୍
କଟକ ରୋଡ୍, ଭୁବନେଶ୍ୱର-୬

★ ମୂଲ୍ୟ— ୭-୦୦ ( ସାତଟଙ୍କା ମାତ୍ର )

ଶ୍ରୀ
ଶ୍ରୀ
ଶ୍ରୀ
ଜ
ଗ
ନ୍ନା
ଥ
ମ
ହା
ପ୍ର
ଭୁ
ଙ୍କ

ମାନସ ପୂଜାର ନୈବେଦ୍ୟ ସମର୍ପଣ,
ଶ୍ରୀଚରଣେ କୋଟି କୋଟି ପ୍ରଣତ ସହିତ ।

ଅଧମ ଲେଖକ ।
ଚର-ପଦାଶ୍ରିତ

# ଉପହାର

ଗତ ରଥଯାତ୍ରାଦିନ, ୧୯୯୧ ଜୁଲାଇ ୧୩ ତାରିଖ ସନ୍ଧ୍ୟା ପ୍ରାୟ ପାଞ୍ଚଟାବେଳେ, ଜଗନ୍ନାଥମହାପ୍ରଭୁଙ୍କ ରଥଟଣା ଆରମ୍ଭ ହେବାକୁ ଯାଉଛି, ଏତିକିବେଳେ ରଥାନିକଟ ମଞ୍ଚ- ଉପରୁ ମୋର ଅଶ୍ରୁପୂର୍ଣ୍ଣ ଓ ଭାବବିହ୍ୱଳ ଭାଷଣପରେ, ଯାହାଙ୍କର ପ୍ରଗଳ୍‌ଭ ଅଥଚ ମନୋମୁଗ୍‌ଧକର ଅଖଣ୍ଡ- ବାକ୍‌ପ୍ରବାହ କେତୁ ସମୟପାଇଁ, ବହୁଲକ୍ଷ ଶ୍ରୋତାଙ୍କ ସହିତ ମୋ ମନକୁ ମଧ୍ୟ ଅଭିଭୂତ କରିଦେଇଥିଲା, ସେହି ଜଗନ୍ନାଥଭକ୍ତ ତଥା ଓଡ଼ିଶାର ମନ୍ତ୍ରୀ **ଶ୍ରୀଯୁକ୍ତ ଶରତ୍ କୁମାର କର** ମହୋଦୟଙ୍କୁ ଏହି **"ନୂତନ ଜଗନ୍ନାଥା- ଷ୍ଟକମ୍"** ଉପହାର ସ୍ୱରୂପ ପ୍ରଦାନ କଲି ।

ଗୌରୀକୁମାର ବ୍ରହ୍ମା

# ବିଷୟ ସୂଚୀ

| ଶ୍ଳୋକ ସଂଖ୍ୟା | ବିଷୟର ସୂଚନା |
|---|---|
| ୧ମ ଶ୍ଳୋକ— | କଳିଯୁଗରେ ହିନ୍ଦୁଜାତିର ସର୍ବଶ୍ରେଷ୍ଠ ଦେବତା । |
| ୨ୟ ଶ୍ଳୋକ— | ଜଗନ୍ନାଥଙ୍କର ପ୍ରଥମ ପ୍ରତିଷ୍ଠାତା ଏବଂ ଏବେ ଦେଉଳ ବେଢ଼ା ଭିତରେ ଥିବା କେତେକ ମୁଖ୍ୟ ମନ୍ଦିର । |
| ୩ୟ ଶ୍ଳୋକ— | ବଡ଼ଦେଉଳ ଭିତରେ ଥିବା ଉପାସ୍ୟ ଦେବତା । |
| ୪ର୍ଥ ଶ୍ଳୋକ— | ବଡ଼ଦେଉଳ ଭିତରେ ଚତୁର୍ଦ୍ଧାମୂର୍ତ୍ତି ଓ ବିଗ୍ରହତ୍ରୟ । |
| ୫ମ ଶ୍ଳୋକ— | ଜଗନ୍ନାଥଙ୍କର କେତୋଟି ଅସାଧାରଣ ବିଶେଷତ୍ୱ । |
| ୬ଷ୍ଠ ଶ୍ଳୋକ— | ଜଗନ୍ନାଥ ମୁଖ୍ୟତଃ ପଞ୍ଚଦେବତାଙ୍କ ସମନ୍ୱୟ ଓ (ଗୌଣତଃ ସର୍ବଦେବଦେବୀ-ମୟ ବିଗ୍ରହ) । ତା ସହିତ ନବକଳେବର ପରି ଅନ୍ୟ କେତୋଟି ବିଶେଷତ୍ୱ । |

୭ମ ଶ୍ଳୋକ—	ଜଗନ୍ନାଥଙ୍କ ଦୁଇ ଚକାଆଖିର ଅପୂର୍ବ ବିଶେଷତ୍ୱ ବର୍ଣ୍ଣନା ସହିତ ତାଙ୍କ ଚରଣରେ ନିବେଦନ ।

୮ମ ଶ୍ଳୋକ—	ଜଗନ୍ନାଥ ପଣ୍ଡିତମାନଙ୍କର ଦେବତା ଭାବରେ ଉଲ୍ଲେଖ ସହିତ ଭକ୍ତର ପ୍ରାର୍ଥନା ।



## ଶୁଦ୍ଧିପତ୍ର

| ଶ୍ଳୋକ | ଅଶୁଦ୍ଧ | ଶୁଦ୍ଧ |
| --- | --- | --- |
| ୫.୨ | ବନ୍ଧୁ ବୈଶେଷ୍ଟୁ | ବନ୍ଧୁବୈଶେଷ୍ଟୁ |

କେତେକ ଶବ୍ଦର ଆକାର ପ୍ରଭୃତି ମାତ୍ରା ଭଲଭାବରେ ଉଠିନାହିଁ ଏବଂ ଆଉ କେତେକ ସ୍ଥଳରେ ସାମାନ୍ୟ ତ୍ରୁଟି ରହିଯାଇଛି । ଏଥିପାଇଁ ଆମେ ଦୁଃଖିତ । ପରବର୍ତ୍ତୀ ସଂସ୍କରଣରେ ସଂଶୋଧନ କରାଯିବ ।

# ମୁଖବନ୍ଧ

ଅଧ୍ୟାପକ ବ୍ରହ୍ମା "**ନୂତନ ଜଗନ୍ନାଥାଷ୍ଟକମ୍**" ରଚନାକରି, ତାଙ୍କ ପ୍ରତି ଜଗନ୍ନାଥ କରୁଣାର ପ୍ରମାଣ ଯେପରି ଦେଇଛନ୍ତି, ଅଗଣିତ ଜଗନ୍ନାଥ ଭକ୍ତଙ୍କର ସ୍ନେହ ଓ ଶ୍ରଦ୍ଧା ଲାଭ କରିବା ପାଇଁ ସେହିପରି ଭାବରେ ସମର୍ଥ ହୋଇଛନ୍ତି । ବ୍ୟକ୍ତିଗତ ଭାବରେ ମୁଁ ତାଙ୍କୁ ଅଭିନନ୍ଦନ ଜଣାଉଛି । ଜୀବନର ଅନ୍ତିମ ଭାଗରେ, ଶ୍ରୋତ ବଡ଼ ପ୍ରାୟ କୋଡ଼ିଏ ଖଣ୍ଡି ସଂସ୍କୃତ କାବ୍ୟ କବିତା ରଚନା କରି ସେ ଅନେକଙ୍କୁ ଚମକିତ କରିଦେଇଛନ୍ତି । ସାରା ଜୀବନ ବହୁଶତ ଭାଷଣ ପ୍ରଦାନକରି ଏବଂ ବହୁଶତ ପୃଷ୍ଠାର ସାହିତ୍ୟ ସମାଲୋଚନା ସୃଷ୍ଟିକରି, ସେ ଓଡ଼ିଶାରେ ଏବଂ ଓଡ଼ିଶା ବାହାରେ ସୁଖ୍ୟାତି ଅର୍ଜନ କରିଥିଲେ । କିନ୍ତୁ ସଂସ୍କୃତରେ କାବ୍ୟ-କବିତା ରଚନା କରିବା ବଡ଼ ସହଜ କଥା ନୁହେ । ଅଥଚ, ତିନି ଚାରି ବର୍ଷ ଭିତରେ, ଗୋଟିକ ପରେ ଗୋଟିଏ ସଂସ୍କୃତ ରଚନା ପ୍ରକାଶ କରି, ସେ ପ୍ରକୃତରେ ତାଙ୍କପ୍ରତି ଭଗବତ୍‌-କୃପାର ନିଦର୍ଶନ ଦେଇଛନ୍ତି ।

**ଜଗନ୍ନାଥାଷ୍ଟକମ୍**— ଏହାର ଅର୍ଥ ଜଗନ୍ନାଥ ମହାପ୍ରଭୁଙ୍କ ସଂପର୍କରେ ଆଠଗୋଟି ଶ୍ଳୋକ । "ଜଗନ୍ନାଥାଷ୍ଟକମ୍" ଶବ୍ଦ ଉଚ୍ଚାରଣ କରିବାମାତ୍ରେ ଆମର ମନେ ପଡ଼ିଯାଏ— "ଜଗନ୍ନାଥ ସ୍ୱାମୀ ନୟନପଥଗାମୀ ଭବତୁ ମେ" । ଏହି ରଚନାଟି ବିଶେଷକରି ଓଡ଼ିଶାରେ ଅତ୍ୟନ୍ତ ଜନପ୍ରିୟ ହୋଇଅଛି । ରଥଯାତ୍ରା ଦିନ ଶହ ଶହ ଭକ୍ତ ଏହି ସ୍ତବପାଠ କରିଥାଆନ୍ତି । ଅନ୍ୟ ସମୟରେ ମଧ୍ୟ ଏହି ଅଷ୍ଟକ ବହୁଲୋକଙ୍କ ମୁଖରୁ ନିର୍ଗତ ହୋଇଥାଏ । ଏହି ସ୍ତବରେ ଯେଉଁ ଆଠଗୋଟି ଶ୍ଳୋକ ଅଛି, ତହିଁରେ ପ୍ରତ୍ୟେକ ଶ୍ଳୋକର ଶେଷପାଦ (ଧାଡ଼ି) ହେଉଛି, "ଜଗନ୍ନାଥସ୍ୱାମୀ" ଇତ୍ୟାଦି ।

## ଏହି ପ୍ରସିଦ୍ଧ 'ଜଗନ୍ନାଥାଷ୍ଟକମ୍' କାହାର ?

ଏହି ଜଗନ୍ନାଥାଷ୍ଟକର ରଚୟିତା କିଏ, ସେ ସଂପର୍କରେ ମତଭେଦ ଅଛି । ଗୋଟିଏ ମତ ହେଉଛି, ଆଦି ଶଙ୍କରାଚାର୍ଯ୍ୟ ଏହାର ଲେଖକ । କିନ୍ତୁ ଉତ୍ତର ପୂର୍ବ ଭାରତରେ ଏହି ଅଷ୍ଟକଟି ଶ୍ରୀ ଚୈତନ୍ୟଙ୍କର ରଚନାବୋଲି ଗୃହୀତ ହୋଇଥାଏ । ଓଡ଼ିଶାର ସୁମହାନ୍ ପଣ୍ଡିତ ସ୍ୱର୍ଗତ ନୀଳକଣ୍ଠ ଦାସ ଏହାକୁ ଶ୍ରୀଚୈତନ୍ୟଙ୍କର ରଚନାବୋଲି ତାଙ୍କର 'ଓଡ଼ିଆ ସାହିତ୍ୟର କ୍ରମ ପରିଣାମ' ପୁସ୍ତକରେ ଲେଖିଛନ୍ତି । ପ୍ରକୃତରେ ଏହାର ଲେଖକ କିଏ, ଏ ସଂପର୍କରେ ଏପର୍ଯ୍ୟନ୍ତ କେହି ସ୍ଥିର ସିଦ୍ଧାନ୍ତରେ ଉପନୀତ ହୋଇପାରି ନାହାନ୍ତି ।

## ଏହି ଅଷ୍ଟକ ଶଙ୍କରାଚାର୍ଯ୍ୟଙ୍କର ହୋଇପାରେ କି ?

'ଶଙ୍କରାଚାର୍ଯ୍ୟ' ଶବ୍ଦରୁ ଦୁଇଟି କଥା ବୁଝାଯାଏ । ପ୍ରଥମଟି ହେଉଛି, ଆଦିଶଙ୍କରାଚାର୍ଯ୍ୟ । ଏହାଙ୍କ ସଂପର୍କରେ ପୁଣି ଦୁଇଟି ବିଶିଷ୍ଟ ମତ ଦେଖାଯାଏ । ପାଶ୍ଚାତ୍ୟ ପଣ୍ଡିତଗଣ ଏବଂ ଭାରତର ବଡ଼ ବଡ଼ ଦାର୍ଶନିକ ଓ ଐତିହାସିକମାନଙ୍କ ମତରେ, ଆଦିଶଙ୍କରାଚାର୍ଯ୍ୟଙ୍କ ସମୟ ହେଉଛି 788 ରୁ 820 A.D. । କିନ୍ତୁ ଏବେ ନିକଟରେ ପ୍ରକାଶ ପାଇଥିବା ଗୋଟିଏ ଇଂରାଜୀ ପୁସ୍ତକରେ ✶ ଏକଥା ପ୍ରମାଣ କରାଯାଇଛି ଯେ, ଆଦିଶଙ୍କରାଚାର୍ଯ୍ୟ ଅଢ଼େଇ ହଜାର ବର୍ଷତଳେ ( ଖ୍ରୀ. ପୂ. 509—477 ) ଆବିର୍ଭୂତ ହୋଇଥିଲେ । ଅନ୍ୟଭାବରେ କହିଲେ, ଯେଉଁ ସମୟରେ ଗୌତମବୁଦ୍ଧ ଜୀବିତଥିଲେ, ସେହି ସମୟରେ ଶଙ୍କରାଚାର୍ଯ୍ୟ ମଧ୍ୟ ଜୀବିତ ଥିଲେ । ଏହି ଦ୍ୱିତୀୟ ମତରେ ସତ୍ୟତା ଥାଇପାରେ । କିନ୍ତୁ ଭାରତର ଏବଂ ବିଦେଶର ପଣ୍ଡିତମାନେ ଏହି ମତକୁ ଏପର୍ଯ୍ୟନ୍ତ ଗ୍ରହଣକରି ନାହାନ୍ତି । ସାଧାରଣ ଓ ପ୍ରତିଷ୍ଠିତ ଐତିହାସିକ ମତ ( ଖ୍ରୀ 788—820 ) କୁ ଗ୍ରହଣକଲେ, ଖ୍ରୀ 800 ବେଳକୁ

---

✶ T. S. Narayan Shastry— The Age of Sankara. Also– The Traditional Age of Sankaracharya by A. N. Aiyer & S. L. Shastry.

ଶଙ୍କରାଚାର୍ଯ୍ୟଙ୍କର ବୟସଥିଲା ବାରବର୍ଷ । ସେ କେବଳ ବତିଶ ବର୍ଷ ବଞ୍ଚିଥିଲେ ବୋଲି ସମସ୍ତେ କହିଅଛନ୍ତି । ତେଣୁ, 800 ରୁ 820 ଭିତରେ ସେ ଜଗନ୍ନାଥ ଧାମକୁ ଆସିଥିଲେବୋଲି କୁହାଯାଇପାରେ । ଅବଶ୍ୟ, ସେତେବେଳକୁ ମଧ୍ୟ 'ରାଧାପ୍ରେମ'ର ଭାବ ଏ ଦେଶ ସଂସ୍କୃତିରେ ପ୍ରବେଶ କରି ନଥିବା ହିଁ ପ୍ରତୀୟମାନ ହୁଏ ।

କିନ୍ତୁ 'ଶଙ୍କରାଚାର୍ଯ୍ୟ' ଶବ୍ଦ କେବଳ ଆଦିଶଙ୍କରଙ୍କୁ ବୁଝାଇ ନଥାଏ । ଭାରତର ଚାରିକୋଣରେ ଆଦିଶଙ୍କରାଚାର୍ଯ୍ୟ ଚାରିଗୋଟି ମଠ ସ୍ଥାପନ କରି, ସେ ସ୍ଥାନଗୁଡ଼ିକର ଗୌରବ ବଢ଼ାଇଦେଇଛନ୍ତି । 'ଧାମ' ଶବ୍ଦର ଅର୍ଥ ସ୍ଥାନ, ପବିତ୍ର ସ୍ଥାନ । ତେଣୁ, ଯେଉଁଠାରେ ଆଦିଶଙ୍କରାଚାର୍ଯ୍ୟ ମଠ ସ୍ଥାପନ କରିଥିଲେ, ସେହି ସ୍ଥାନଗୁଡ଼ିକ ଗୋଟିଏ ଗୋଟିଏ 'ଧାମ' ରୂପେ ପରିଚିତ । ଏହି ଦୃଷ୍ଟିରୁ, ଆମ ପୁରୀକୁ 'ଜଗନ୍ନାଥଧାମ' ବୋଲି କୁହାଯାଇଥାଏ । ଏହି ଚାରିଧାମର ମଠମାନଙ୍କରେ ଯେଉଁମାନେ ମଠାଧୀଶ ହୋଇରହନ୍ତି, ଲୋକେ ସେମାନଙ୍କୁ ମଧ୍ୟ "ଶଙ୍କରାଚାର୍ଯ୍ୟ"ବୋଲି କହିଥାଆନ୍ତି । ବେଳେବେଳେ ସ୍ଥାନର ନାମ ସଂଯୁକ୍ତକରି, 'ଶଙ୍କରାଚାର୍ଯ୍ୟ'ବୋଲି କୁହାଯାଇଥାଏ, ଯଥା— "ପୁରୀର ଶଙ୍କରାଚାର୍ଯ୍ୟ" । ବେଳେବେଳେ କେବଳ "ଶଙ୍କରାଚାର୍ଯ୍ୟ"ବୋଲି କୁହାଯାଇଥାଏ ।

ତେଣୁ, ଯଦି ଆମେ କହିବା, ଏହି ଅଷ୍ଟକ ହେଉଛି ଶଙ୍କରାଚାର୍ଯ୍ୟଙ୍କ ରଚନା, ଏହାର ଏକମାତ୍ର ଅର୍ଥ ନୁହେ ଯେ, ଏହା ହେଉଛି ଆଦିଶଙ୍କରାଚାର୍ଯ୍ୟଙ୍କ ରଚନା । ପୁରୀ ହେଉ ବା ଯେକୌଣସି ଧାମ ହେଉ, ସେଠାର ମଠାଧୀଶ ଏହି 'ଅଷ୍ଟକ' ଲେଖିଥାଇପାରନ୍ତି ।

## ଏହି ଅଷ୍ଟକ ଶଙ୍କରାଚାର୍ଯ୍ୟଙ୍କର ହୋଇ ନପାରେ :—

ପ୍ରସିଦ୍ଧ 'ଜଗନ୍ନାଥାଷ୍ଟକମ୍' ଯଦିଓ ଶଙ୍କରାଚାର୍ଯ୍ୟଙ୍କର ବୋଲି କେହି ଧରିନଅଛନ୍ତି, ତଥାପି ଶଙ୍କରାଚାର୍ଯ୍ୟଙ୍କର ରଚନାବଳୀ ସହିତ ଯେଉଁମାନେ ସୁପରିଚିତ, ସେମାନେ ଏହାକୁ ତାଙ୍କର ବୋଲି କେବେ ବିଶ୍ୱାସ କରିବେ ନାହିଁ । ଅବଶ୍ୟ, ଶଙ୍କର-ଗ୍ରନ୍ଥାବଳୀରେ ଭ୍ରମବଶତଃ ହେଉ କିମ୍ବା ଅନ୍ୟ

କୌଣସି କାରଣରୁ ହେଉ, କେହି ଜଣେ ଏହି ଅଷ୍ଟକଟିକୁ ଭର୍ତ୍ତିକରିଦେବା-
ପରେ, ଏହା ଶଙ୍କରଙ୍କରବୋଲି କେତେକ ସ୍ଥଳରେ ଚଳି ଯାଇଛି । ମାତ୍ର
ଶଙ୍କର-ଗ୍ରନ୍ଥାବଳୀରେ ଗୋଟିଏ ନାମରେ ଦୁଇଟି ସ୍ତବ ରହିଅଛି । ଦୁଇଟି
ଯାକର ନାମ 'ଆନନ୍ଦ-ଲହରୀ' । ଜଣେ ଲୋକ ଅଡ଼କଳ ଗୋଟିଏ ନାମରେ
ଦୁଇଟି କବିତା ଲେଖିଥିବ, ଏହା ଆମ ସାଧାରଣ ଜ୍ଞାନର ଘୋର ବିରୋଧୀ ।
ତେଣୁ, ଶଙ୍କରଗ୍ରନ୍ଥାବଳୀରେ ଯାହା ଭର୍ତ୍ତି ହୋଇଯାଇଛି, ତାହାକୁ ଅକାଟ୍ୟ
ପ୍ରମାଣ ଓ ନିଶ୍ଚିତ ସତ୍ୟବୋଲି ଗ୍ରହଣ କରିବାର କାରଣ ନାହିଁ । ଆନନ୍ଦ-
ଲହରୀର ପ୍ରଥମ ଏକତ୍ରିଂଶ ଶ୍ଲୋକପର୍ଯ୍ୟନ୍ତ ଆତ୍ମସାଧନଦ୍ୱାରା ଆନନ୍ଦୋପଲବ୍ଧି
ବିଷୟ ଶାକ୍ତାଦ୍ୱୈତମତରେ ବର୍ଣ୍ଣିତ ହୋଇଅଛି । ପରବର୍ତ୍ତୀ ପ୍ରାୟ ଷାଠିଏଟି
ଶ୍ଲୋକରେ ଦେବୀଙ୍କ ସୌନ୍ଦର୍ଯ୍ୟ ବର୍ଣ୍ଣିତ ହୋଇଥିବାରୁ "ସୌନ୍ଦର୍ଯ୍ୟ ଲହରୀ"
ନାମରେ ପରିଚିତ । ଏହା ଆଦ୍ୟଶଙ୍କରଙ୍କର ରଚନା । ଏହି ସମଗ୍ର ସ୍ତୋତ୍ରଟି
ମଧ୍ୟ "ଆନନ୍ଦ ଲହରୀ" ନାମରେ ପରିଚିତ । ମାତ୍ର ଅନ୍ୟ ଏକ 'ଆନନ୍ଦ-
ଲହରୀ' ସ୍ତୋତ୍ରରେ 'ମୟ୍ୟାପଞ୍ଚାଶୀତେରଧିକମପଗମତେ ତୁ ବୟସି' ବୋଲି
ଉଲ୍ଲେଖ ଅଛି । ଅର୍ଥାତ୍ "ମତେ ଏବେ ପଞ୍ଚାଅଶୀ ବର୍ଷ ହେଲାଣି ବୋଲି
ଲେଖାଅଛି" । ଏହି ଶ୍ଲୋକକୁ ଶଙ୍କରଙ୍କର ରଚନା ବୋଲି ଧରିନେବା
ଏକାନ୍ତ ହାସ୍ୟାସ୍ପଦ ।

ମୁଁ ମୋର 'ନିତ୍ୟପୂଜା ବିଧାନ' ଓ 'ସ୍ତବରତ୍ନ' ନାମକ
ପୁସ୍ତକରେ, ଏହି ସ୍ତବ, ଶଙ୍କରଙ୍କର ରଚନା ନୁହେ ବୋଲି ଦର୍ଶାଇଅଛି ।
କାରଣ, ଆଚାର୍ଯ୍ୟ ଶଙ୍କରଙ୍କ ଜୀବନକାଳ ମାତ୍ର ବତିଶବର୍ଷ ଥିଲା । ହୁଏତ
(ଅଗରୁ କୁହାଯାଇଥିବାପରି) ଚାରିଧାମରୁ କୌଣସି ଧାମର (ଏପରିକି, ପଞ୍ଚମ
ଧାମରୂପେ ସମ୍ମାନିତ କାଞ୍ଚୀ-କାମକୋଟୀ ପୀଠର ) କେହି ଜଣେ ଧର୍ମଜ୍ଞାନୀ
ଶଙ୍କରାଚାର୍ଯ୍ୟ (ଅର୍ଥାତ୍ ଶଙ୍କର ପୀଠାଧୀଶ) ଏହାକୁ ଲେଖିଥିଲେ । ବେଦରେ
'ଋଷଭଦେବ' ଶବ୍ଦ ଦେଖି ଏବଂ ଜୈନଧର୍ମର ପ୍ରଥମ ପ୍ରଚାରକ ମଧ୍ୟ ସେହି
ନାମର ବ୍ୟକ୍ତି ଥିବାରୁ, "ବେଦରେ ଋଷଭଦେବଙ୍କ ନାମ ଅଛି" ବୋଲି
କହିବା ଯେମିତି ଭ୍ରମପୂର୍ଣ୍ଣ, ଏହି 'ଆନନ୍ଦ ଲହରୀ ସ୍ତୋତ୍ରକୁ' ମୁଖ୍ୟ ବା ଆଦ୍ୟ-
ଶଙ୍କରଙ୍କର ରଚନାବୋଲି ଧରିନେବା ସେହିପରି ଭ୍ରମପୂର୍ଣ୍ଣ ।

## ତେଣୁ ଜଗନ୍ନାଥାଷ୍ଟକମ୍ ଅନ୍ୟର ରଚନା :—

ଏହି ସବୁ ଦୃଷ୍ଟିରୁ ଦେଖିଲେ, ଏହି ଜଗନ୍ନାଥାଷ୍ଟକମ୍ ଶଙ୍କରାଚାର୍ଯ୍ୟଙ୍କ ରଚନା ନୁହେ । ଶଙ୍କରାଚାର୍ଯ୍ୟଙ୍କ ରଚନା ହୋଇଥିଲେ, ପ୍ରଥମ ଶ୍ଳୋକରେ, "ସୁନ୍ଦରୀ ବ୍ରଜବାଳାମାନଙ୍କୁ ଚୁମ୍ବନ କରିବା"ଠାରୁ ସ୍ତବର ଆରମ୍ଭ ହୋଇ ନଥାନ୍ତା । ପୁଣି, ଷଷ୍ଠଶ୍ଳୋକରେ ଅଛି ଯେ, ଜଗନ୍ନାଥ ରାଧାଙ୍କୁ ଆଲିଙ୍ଗନ କରି ସୁଖ ପାଉଥିଲେ । ଅବଶ୍ୟ, ଜଗନ୍ନାଥ ବେଳେବେଳେ ଶ୍ରୀକୃଷ୍ଣଙ୍କ ବେଶରେ ଭକ୍ତମାନଙ୍କୁ ଦେଖାଦିଅନ୍ତି । କିନ୍ତୁ ସେତ ଖାଲି କୃଷ୍ଣବେଶ ଧାରଣ କରନ୍ତି ନାହିଁ, ତହିଁ ସଙ୍ଗେ ସଙ୍ଗେ ଶ୍ରୀରାମଙ୍କ ବେଶ, ଗଣେଶଙ୍କ ବେଶ, ପର୍ଶୁରାମଙ୍କ ବେଶ ଏବଂ ଅନ୍ୟ ଦେବତାଙ୍କ ବେଶ ମଧ୍ୟ ଧାରଣ କରନ୍ତି । ଆମର ଜଗନ୍ନାଥ ହେଉଛନ୍ତି ସର୍ବଦେବମୟ ବିଗ୍ରହ ! ଯେଉଁ ଲୋକ ଯେଉଁ ଦେବତାଙ୍କୁ ସର୍ବଶ୍ରେଷ୍ଠ ଦେବତା ଭାବରେ ପୂଜାକରେ, ସେହି ଲୋକ ଜଗନ୍ନାଥଙ୍କଠାରେ ସେହି ଦେବତାଙ୍କୁ ଦେଖିଥାଏ ବା ଅନୁଭବ କରିଥାଏ । ଦକ୍ଷିଣ ଭାରତର ଗଣପତି ଭଟ୍ଟ ଗଣେଶଙ୍କୁ ହିଁ ସର୍ବଶ୍ରେଷ୍ଠ ଦେବତା ଭାବରେ ପୂଜାକରୁଥିଲେ । ସେ ଜଗନ୍ନାଥଙ୍କୁ ଦେଖିବାକୁ ଯାଇ, ରତ୍ନବେଦି ଉପରେ ଗଜବଦନ ଜଗନ୍ନାଥଙ୍କୁ ହିଁ ଦେଖିବାର କିମ୍ବଦନ୍ତୀ ଚଳିଆସିଛି । ରାମଭକ୍ତ ତୁଳସୀଦାସ ବଡ଼ଦେଉଳ ଭିତରକୁ ଯାଇ ରତ୍ନବେଦି ଉପରେ କେବଳ କାଣ୍ଡ-କୋଦଣ୍ଡଧାରୀ ରାମଚନ୍ଦ୍ରଙ୍କୁ ହିଁ ଦେଖିଥିଲେ । ଧର୍ମ ଚେତନାରେ ଏବଂ ଦେବଉପାସନା କ୍ଷେତ୍ରରେ ଜଗନ୍ନାଥ ହେଉଛନ୍ତି ସର୍ବ ଗର୍ଭିକ ଓ ସର୍ବଦେବମୟ । ଏହାହିଁ ଜଗନ୍ନାଥଙ୍କର ଅସାଧାରଣ ବିଶେଷତ୍ୱ । ଏଭଳି ଦେବତାଙ୍କୁ ବର୍ଣ୍ଣନା କଲାବେଳେ ଆମେ ଯଦି କେବଳ କୃଷ୍ଣଭକ୍ତମାନଙ୍କୁ ସୁହାଇଲାପରି ରାଧା ଓ ଗୋପୀମାନଙ୍କ ଲୀଳା ଗୋଟିଏ ଛୋଟିଆ ସ୍ତବ ଭିତରେ ବର୍ଣ୍ଣନା କରିବା, ତାହାହେଲେ ଓଡ଼ିଶାର ଉଦାର ସଂସ୍କୃତି ତଥା ଜଗନ୍ନାଥଧର୍ମର ବିଶାଳତା ଓ ବ୍ୟାପକତା ବ୍ୟାହତ ହେବ ।

ଇତିହାସରୁ ଜଣାପାଏ, ଶୈବଧର୍ମ ଏବଂ ବୈଷ୍ଣବଧର୍ମ ଭିତରେ ଗୁରୁତର ସଂଘର୍ଷ ଶତ ଶତ ବର୍ଷଧରି ଚାଲିଥିଲା । ଅବଶ୍ୟ, ଶଙ୍କରାଚାର୍ଯ୍ୟଙ୍କ ଦୃଷ୍ଟିରେ ବିଷ୍ଣୁ ଏବଂ ଶିବଙ୍କ ମଧ୍ୟରେ ବିଭେଦର ପ୍ରାଚୀର ଠିଆ କରାଇବା

ଉଚିତ ନୁହେ । ବହୁ ଦେବଦେବୀଙ୍କ ଉପରେ ସେ ସ୍ତବ ଲେଖିଛନ୍ତି । ତାଙ୍କ ଲେଖାରେ ଅପୂର୍ବ ଉଦାରତା ରହିଅଛି, ଚିନ୍ତାର ପବିତ୍ରତା ରହିଅଛି ଏବଂ ଦେବତାମାନଙ୍କର ଜନମଙ୍ଗଳ ଲକ୍ଷ୍ୟରେ ଯେଉଁସବୁ ବିଶିଷ୍ଟ କାର୍ଯ୍ୟ, ତାହା-ସବୁ ଜଣାଇବାର ଅଭିଳାଷ ରହିଅଛି। ଜଗନ୍ନାଥ ଯଦି କୃଷ୍ଣ ହୁଅନ୍ତି, ତେବେ କଂସ, ଜରାସନ୍ଧ ପ୍ରଭୃତି ଅସୁରଙ୍କୁ ଦମନ କରିବାପାଇଁ ତାଙ୍କ ଦେହଧାରଣର ଲକ୍ଷ୍ୟ ଥିବାରୁ, ଏହି କଥାଟି ଏହି ସ୍ତବରେ ଗୁରୁତ୍ୱର ସହିତ ବର୍ଣ୍ଣିତ ହେବାର ଥିଲା। ମାନବ ସମାଜର ମଙ୍ଗଳ ଦୃଷ୍ଟିରୁ କୃଷ୍ଣ ଯାହାସବୁ କରିଥିଲେ, ଏହି ଅଷ୍ଟକରେ ତାହା ସ୍ଥାନ ପାଇନାହିଁ । କେବଳ, ଗୋପ-ଯୁବତୀ ରମଣ ରୂପେ କୃଷ୍ଣଙ୍କୁ ଚିନ୍ତାକରିଯାଇ, ସଂଯମର ଦେବତା ଜଗନ୍ନାଥଙ୍କଠାରେ ବଳପୂର୍ବକ, ସେସବୁ କଥା ବୋଲି ଦିଆଯାଇଛି । ତେଣୁ, ଏହି ଦୃଷ୍ଟିକୋଣରୁ, ଏଭଳି କବିତା ଜଗନ୍ନାଥଙ୍କ ଲକ୍ଷ୍ୟରେ କେବେହେଲେ ଶଙ୍କରାଚାର୍ଯ୍ୟ ଲେଖି ନଥିବେ ।

## ଜଗନ୍ନାଥାଷ୍ଟକମ୍ ଚୈତନ୍ୟ ଲେଖିଥିଲେ କି ?

ଚୈତନ୍ୟଦେବ ସଂସ୍କୃତରେ ସୁପଣ୍ଡିତ ଥିଲେ, ଏଥିରେ ସନ୍ଦେହ ନାହିଁ । କିନ୍ତୁ, "ତୃଣାଦପି ସୁନୀଚେନ" ପ୍ରଭୃତି ଅଳ୍ପ କେତୋଟି ଶ୍ଳୋକ ଛାଡ଼ିଦେଲେ ଚୈତନ୍ୟଙ୍କର ଅନ୍ୟ ରଚନାଥିବା ଜଣାଯାଇନାହିଁ । ଚୈତନ୍ୟ ଥିଲେ ଆମ ଯାଜପୁରର ମଧୁକର ମିଶ୍ରଙ୍କର ଅଣନାତି । ସେ ଯେତେବେଳେ ବଙ୍ଗଦେଶରୁ ନିଜ ପୂର୍ବପୁରୁଷଙ୍କ ଜନ୍ମଭୂମି ଓଡ଼ିଶାକୁ ଆସିଲେ, ଏ ଦେଶର ପାଣି ପବନ ତାଙ୍କୁ ଅପୂର୍ବ ମାୟାମୋହରେ ବାନ୍ଧି ପକାଇଲା । ଓଡ଼ିଶାକୁ ଆସିବାପରେ ସେ ମାତ୍ର ଚଉଦ ବର୍ଷ ବଞ୍ଚିଥିଲେ । ଏହି ଚଉଦ ବର୍ଷ ଭିତରୁ ଦୀର୍ଘ ଅଠରବର୍ଷକାଳ ସେ ଓଡ଼ିଶାରେ କଟାଇଥିଲେ । ଯଦି ଏହି ଅଷ୍ଟକ ସେ ଲେଖିଥାଆନ୍ତେ, ତାହାହେଲେ ଆଜିର ବଡ଼ ରାଧାକାନ୍ତ ମଠରେ ତାଙ୍କ ସମୟରୁ ଏହି ଅଷ୍ଟକ ଅପୂର୍ବ ନିଷ୍ଠାର ସହିତ ପାଠ କରାଯାଉ ଥାଆନ୍ତା । ଏପରିକି, ସମଗ୍ର ବଙ୍ଗଳାରେ ତଥା ମଥୁରାରେ ମଧ୍ୟ ଏହା ତାଙ୍କ ଭକ୍ତମାନଙ୍କର 'ପଞ୍ଚମବେଦ' ପରି ସମ୍ମାନିତ ହୋଇଥାଆନ୍ତା । କିନ୍ତୁ ବାସ୍ତବରେ, ସେପରି କିଛି ହୋଇନାହିଁ ।

ତେଣୁ ମନେହୁଏ, ଜୟଦେବ ଦ୍ୱାଦଶ ଶତାବ୍ଦୀର ମଧ୍ୟଭାଗରେ ତାଙ୍କ "ଗୀତଗୋବିନ୍ଦ" ଲେଖିସାରିବାପରେ ଏବଂ ପୁରୀ ଦେଉଳର ମଣ୍ଡପରେ, ଗୀତଗୋବିନ୍ଦର ଆବୃତ୍ତି ଗୃହୀତ ହୋଇସାରିବାପରେ, କୌଣସି ଭକ୍ତ ଏହି ଅଷ୍ଟକ ଲେଖିଥିଲେ। ହୁଏତ ଚୈତନ୍ୟ ଆସିଲାବେଳକୁ ଓଡ଼ିଶାରେ ଥିବା ରାଧାକୃଷ୍ଣ ଭକ୍ତଙ୍କ ମଧ୍ୟରେ ଏହି ଅଷ୍ଟକ ପାଠକରାଯାଉଥିଲା। ମନେହୁଏ, ରାଧାଭକ୍ତ ଏବଂ ଗୋପୀଭାବର ପରମ ସେବକ ଚୈତନ୍ୟଦେବ ମଧ୍ୟ, ଏହି ଅଷ୍ଟକରେ ଗୋପୀ ଏବଂ ରାଧାଙ୍କ କଥା ଥିବାରୁ, ଏହାକୁ ଜଗନ୍ନାଥ ମନ୍ଦିରରେ ପଢ଼ିଥିବେ। ତେଣୁ, ଏହି ଅଷ୍ଟକଟି ଚୈତନ୍ୟଙ୍କଦ୍ୱାରା ଲିଖିତବୋଲି ଧରିନେବା ଠିକ୍ ହେବନାହିଁ। କବିତ୍ୱ ଦୃଷ୍ଟିରୁ ମଧ ଏହା ତାଙ୍କର ହୋଇନପାରେ, ଏ କଥା ଟିକିଏ ପରେ ଆଲୋଚନା କରାଯାଇଛି।

ଚୈତନ୍ୟଙ୍କ ଭକ୍ତମାନେ ଭକ୍ତିକୁ ହିଁ ମୁକ୍ତିଲାଭର ଶ୍ରେଷ୍ଠମାର୍ଗରୂପେ ଗ୍ରହଣ କଲାବେଳେ, ତାଙ୍କ ସମୟର ଓଡ଼ିଶାର ଭକ୍ତମାନେ, ମୁକ୍ତିଲାଭପାଇଁ ଭକ୍ତି ଏବଂ ଯୋଗ— ଏ ଦୁଇଟିକୁ ସମାନ ଭାବରେ ପ୍ରାଧାନ୍ୟ ଦେଇଥିଲେ। ସେ କାଳର ବର୍ଣ୍ଣନା ପଞ୍ଚସଖା ସାହିତ୍ୟରେ ଏହି କଥାହିଁ ପ୍ରତିପାଦିତ ହୋଇଅଛି। ତେଣୁ, ସେକାଳର ପୁରୀ ଗୋବର୍ଦ୍ଧନମଠର ବା ଶଙ୍କରାଚାର୍ଯ୍ୟ ମଠର ଅଧିପତି, ଜଗନ୍ନାଥ ଧର୍ମର ଯୋଗ ବା ସଂଯମଦିଗଟି ତ୍ୟାଗକରି, ବୃନ୍ଦାବନର ମୁକ୍ତପ୍ରେମ ଉପରେ ଏତେ ବେଶୀ ଗୁରୁତ୍ୱ ଦେଇଥିବା ଏକାବେଳକେ ଅସମ୍ଭବ। ତେଣୁ, ନା ଶଙ୍କର, ନା ଚୈତନ୍ୟଦେବ, କେହିହେଲେ ଜଗନ୍ନାଥାଷ୍ଟକ ଲେଖିଥିବା ସମ୍ଭବପର ନୁହେ।

## 'ଜଗନ୍ନାଥାଷ୍ଟକମ୍'ରେ କବିତ୍ୱର ସ୍ତର :—

ଏହି ସ୍ତବରେ ଆଠଗୋଟି ଶ୍ଳୋକଅଛି। ସଂସ୍କୃତ କବି ସମାଜରେ ଏହି ମତ ଦୃଢ଼ଭାବରେ ଅନୁସୃତ ହୋଇଥାଏ ଯେ, ଗୋଟିଏ ଅର୍ଥରେ ଗୋଟିଏ ଶବ୍ଦ ବା ଗୋଟିଏ ଭାବ, ଅବିକଳ ରୂପରେ ଏକାଧିକଥର ଗୋଟିଏ ଶ୍ଳୋକରେ ବା ଗ୍ରନ୍ଥ ରଚନାରେ ବିନ୍ୟାସ କରାଯାଏ ନାହିଁ। କୌଣସି ବଡ଼କବି ଏଭଳି ଭୁଲ କରେ ନାହିଁ। ଅଥଚ, ଜଗନ୍ନାଥାଷ୍ଟକର ପ୍ରଥମ ଶ୍ଳୋକରେ

ଅଛି— 'ବ୍ରହ୍ମା ତୁମକୁ ବନ୍ଦନା କରନ୍ତି' । ପୁଣି ଚତୁର୍ଥ ଶ୍ଳୋକରେ ଅଛି, ବ୍ରହ୍ମା ତୁମକୁ ବନ୍ଦନା କରନ୍ତି' । ଏହା ଅତ୍ୟନ୍ତ ପିଲାଳିଆପଣ ଜଣାଯାଉଛି । କୌଣସି ବିଶିଷ୍ଟ କବି ଦୁଇଟି ଶ୍ଳୋକର ବ୍ୟବଧାନରେ ବା ଗୋଟିଏ ଗ୍ରେଡ଼ିଆ ରଚନାରେ ଜଣେ ନିର୍ଦ୍ଦିଷ୍ଟ ଦେବତା ଅନ୍ୟଜଣେ ଦେବତାଙ୍କୁ ପୂଜାକରିବା କଥା ଦୁଇଥର ଉଲ୍ଲେଖ କରି ନ ପାରେ ।

ଦ୍ୱିତୀୟରେ, ପ୍ରଥମ ଶ୍ଳୋକରେ ଅଛି, ରମା ଅର୍ଥାତ୍ ଲକ୍ଷ୍ମୀ ଜଗନ୍ନାଥଙ୍କୁ ପୂଜା କରନ୍ତି । ଚତୁର୍ଥ ଶ୍ଳୋକରେ ପୁଣିଥରେ କୁହାଯାଇଛି "ରମା ଅର୍ଥାତ୍ ଲକ୍ଷ୍ମୀ ତୁମକୁ ପୂଜାକରନ୍ତି" । କଅଣ ଅନ୍ୟ ଦେବୀଙ୍କ ନାମ କବିଙ୍କୁ ଜଣା ନଥିଲା କି ? ଏତେ ଅଳ୍ପ ବ୍ୟବଧାନରେ ଜଗନ୍ନାଥଙ୍କୁ ଲକ୍ଷ୍ମୀ ବନ୍ଦନା କରନ୍ତି ବୋଲି ଦୁଇଥର କହିବାଦ୍ୱାରା ଲେଖକର ପରିପକ୍ୱ କବିତ୍ୱର ପରିଚୟ ମିଳୁଅଛି କି ?

ତୃତୀୟରେ, ଲକ୍ଷ୍ମୀ ହେଉଛନ୍ତି, ଜଗନ୍ନାଥଙ୍କର ପତ୍ନୀ । ହିନ୍ଦୁ ସଂସ୍କୃତିରେ ପତି ହେଉଛି ନାରୀର ଦେବତା । ତେଣୁ, 'ହେ ଜଗନ୍ନାଥ ! ତୁମେ ଏତେ ବଡ଼ ଯେ, ତୁମର ପତ୍ନୀ ଲକ୍ଷ୍ମୀ ମଧ୍ୟ ତୁମକୁ ବନ୍ଦନା କରନ୍ତି" । ଏହା କହିବା କବିଙ୍କ ପକ୍ଷରେ ଅଶୋଭନୀୟ ହୋଇନାହିଁ କି ? ନିଜ ପତ୍ନୀ ଦ୍ୱାରା ଜଗନ୍ନାଥ ସମ୍ମାନିତ ହେଉଥିବାର ବର୍ଣ୍ଣନା ଜଗନ୍ନାଥଙ୍କର ଗୌରବ ବୃଦ୍ଧି କରୁଅଛି କି ?

ଚତୁର୍ଥରେ; କବି (ତୃତୀୟ ଶ୍ଳୋକରେ) କହିଛନ୍ତି ଯେ, ନୀଳଶୈଳ ଉପରେ ଜଗନ୍ନାଥ ବସିଛନ୍ତି । ଅଥଚ ଟିକିଏ ପରେ ଷଷ୍ଠ ଶ୍ଳୋକରେ ପୁଣିଥରେ କହିଛନ୍ତି, ଜଗନ୍ନାଥ ନୀଳଶୈଳ ଉପରେ ରହିଛନ୍ତି । ଏହି ଗୋଟିଏ ଗ୍ରେଡ଼ିଆ କଥାକୁ ଦୁଇଥର କୁହାଯିବାଦ୍ୱାରା କବିଙ୍କର କବିତ୍ୱ ଉଚ୍ଚସ୍ତରରବୋଲି ଜଣାଯାଉଅଛି କି ? ଅଷ୍ଟମ ଶ୍ଳୋକରେ ଏହି କଥାକୁ ପୁଣି ଥରେ କୁହାଯାଇଛି । କବିତ୍ୱ ବିଚାରରେ ଏହିଭଳି ରଚନା ଆଦୌ ଉଚ୍ଚସ୍ତରର ନୁହେ ।

ପଞ୍ଚମରେ, (ଷଷ୍ଠଶ୍ଳୋକରେ) କବି ଜଗନ୍ନାଥ ଏବଂ ରାଧାଙ୍କର ଆଲିଙ୍ଗନ କଥା ବର୍ଣ୍ଣନା କରିଛନ୍ତି । ଗବେଷକ କେଦାରନାଥବାବୁଙ୍କ ମତରେ ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ ରାଧାଭାବକୁ ଓଡ଼ିଶାର ପଣ୍ଡିତମାନେ ପ୍ରବଳ ବିରୋଧ କରୁଥିଲେ । ଏପରିକି, ଅଷ୍ଟାଦଶ ଶତାବ୍ଦୀର ଆରମ୍ଭ ପର୍ଯ୍ୟନ୍ତ ଓଡ଼ିଶାରେ 'ରାଧାଷ୍ଟମୀ' ପାଳିତ ହେଉ ନଥିଲା ବୋଲି ସେ ପ୍ରମାଣ ଦେଇଛନ୍ତି । ✱ ତେଣୁ ଜଗନ୍ନାଥ ଓ ରାଧାଙ୍କ ଆଲିଙ୍ଗନ କଥା ଯେ ବର୍ଣ୍ଣନା କରିଛନ୍ତି, ସେ ମୁଖ୍ୟତଃ ଜଗନ୍ନାଥଙ୍କପାଇଁ ଏହି ଅଷ୍ଟକ ଲେଖି ନାହାନ୍ତି । ସେ ଲେଖିଥିଲେ, ରାଧାପ୍ରେମୀ ଶ୍ରୀକୃଷ୍ଣଙ୍କ ପାଇଁ ।

## ଜଗନ୍ନାଥାଷ୍ଟକରେ ଲକ୍ଷ୍ମୀଙ୍କ ଉଲ୍ଲେଖ :—

ପ୍ରସିଦ୍ଧ ଜଗନ୍ନାଥାଷ୍ଟକର ପଞ୍ଚମ ଶ୍ଳୋକରେ ରଥଯାତ୍ରାକଥା ବର୍ଣ୍ଣିତ ହୋଇଛି । ସେହିଠାରେ ପୁଣି ଅଛି, ସିନ୍ଧୁସୁତୟା ଅର୍ଥାତ୍ "ସମୁଦ୍ର-ନନ୍ଦନୀ ଲକ୍ଷ୍ମୀଙ୍କ ସହିତ । ରଥଯାତ୍ରା ଦିନ ଶ୍ରୀମନ୍ଦିରର ତିନିବିଗ୍ରହ ତିନିରଥରେ ଯାଆନ୍ତି ସିନା, ମହାଲକ୍ଷ୍ମୀ ଯାଆନ୍ତି ନାହିଁ । ଜଗନ୍ନାଥଙ୍କ ବର୍ଣ୍ଣନା ସଂପର୍କରେ ଲକ୍ଷ୍ମୀଙ୍କୁ ପ୍ରାଧାନ୍ୟ ଦିଆଯାଇ ନ ଥାଏ । ଐତିହାସିକମାନେ ଏବେ ଅଭିଲେଖର ପ୍ରମାଣ ଅନୁସାରେ ସ୍ପଷ୍ଟଭାବରେ ଘୋଷଣା କଲେଣି ଯେ, ଏହି ପୁରୀ ମନ୍ଦିର-ନିର୍ମାତା ଚୋଡ଼ଗଙ୍ଗଦେବଙ୍କ ସମୟ ପର୍ଯ୍ୟନ୍ତ, ଲକ୍ଷ୍ମୀଙ୍କପାଇଁ, ବଡ଼ଦେଉଳ ବେଢ଼ା ଭିତରେ, ମନ୍ଦିରଟିଏ ମଧ୍ୟ ନ ଥିଲା । ତେଣୁ ଆଜି ଠିଆ ହୋଇଥିବା ଲକ୍ଷ୍ମୀ-ମନ୍ଦିର ଶଙ୍କରାଚାର୍ଯ୍ୟଙ୍କର ପ୍ରାୟ ସାଢ଼େ ତିନିଶହ ବର୍ଷପରେ ନିର୍ମିତ ହୋଇଥିଲା । ସୁତରାଂ, ଯେଉଁ ବଡ଼ଦେଉଳରେ ଜଗନ୍ନାଥ ପ୍ରତିଷ୍ଠିତ ହେବାର ଶହ ଶହ ବର୍ଷପରେ ମଧ୍ୟ ଲକ୍ଷ୍ମୀଙ୍କ ପାଇଁ ସ୍ୱତନ୍ତ୍ର ମନ୍ଦିରଟିଏ ନ ଥିଲା ଏବଂ ଯେଉଁଠାରେ ଏବେ ମଧ୍ୟ ରଥଯାତ୍ରାବେଳେ, ଜଗନ୍ନାଥ, ଲକ୍ଷ୍ମୀଙ୍କ ଉପରେ ଗୁରୁତ୍ୱ ନ ଦେଇ, ଭଉଣୀ ସୁଭଦ୍ରାଙ୍କୁ ନେଇ ଗୁଣ୍ଡିଚା ଘରକୁ ଯାଇଥିବାରୁ, ରଥଯାତ୍ରା ଶେଷରେ ଜଗନ୍ନାଥ ଓ ଲକ୍ଷ୍ମୀଙ୍କର କଳହଟିଏ, ସେହି ମନ୍ଦିରର "ମହଣ-ଦେବତା"

✱ Des. Catalogue of sans. mss. ( 1958 )— Sri K. N. Mahapatra— P. 37 of the introduction.

ଜଗନ୍ନାଥଙ୍କର ରଥଯାତ୍ରା ପ୍ରସଙ୍ଗରେ ଲକ୍ଷ୍ମୀଙ୍କୁ ପ୍ରାଧାନ୍ୟ ଦିଆଯିବା ଆଦୌ ସମୁଚିତ ମନେ ହେଉନାହିଁ । ତେଣୁ ଏକଥା କୁହାଯାଇପାରିବ ଯେ, ଆଦ୍ୟଶଙ୍କର ବା ଅତୁଳ୍ୟ ପ୍ରତିଭାସମ୍ପନ୍ନ ଅଭିନବ ଶଙ୍କର ( ଖ୍ରୀ:ଅ: 788 ରୁ 820 ) ଏହି ଅଷ୍ଟକ ଲେଖି ନାହାନ୍ତି ଏବଂ ରଥଯାତ୍ରାବେଳେ ଲକ୍ଷ୍ମୀଙ୍କୁ ପ୍ରାଧାନ୍ୟଦେଇ, ଏହି ଶ୍ଳୋକ ରଚିତହୋଇଥିବା ହେତୁ, ଆମର ସାଧାରଣ ଦୃଷ୍ଟିରୁ, ଏହି ଅଷ୍ଟକର ଲେଖକ ଜଗନ୍ନାଥଙ୍କ ସଂପର୍କରେ ବିଶେଷ କଥା ଜାଣିଥିଲାପରି ମନେ ହେଉନାହିଁ । ତେଣୁ, ଏହି 'ଜଗନ୍ନାଥାଷ୍ଟକମ୍' ଜଗନ୍ନାଥଙ୍କ ଗୌରବ ପ୍ରକାଶରେ ସମର୍ଥ ହୋଇପାରି ନାହିଁ । ଏହି ସ୍ତବରେ ପୀଠାଧୀଶ୍ୱରୀ 'ବିମଳା' ଏକାନ୍ତ ଗୌଣ !

## ତେଣୁ ପ୍ରସିଦ୍ଧ ଜଗନ୍ନାଥାଷ୍ଟକ ହେଉଛି "ଶ୍ରୀକୃଷ୍ଣ ଭିତ୍ତିକ" :—

ସବୁ ଦୃଷ୍ଟିରୁ ବିଚାରକଲେ, ଏହି ଅଷ୍ଟକର ଲେଖକ ଉଚ୍ଚ ଦରର କବିତ୍ୱ ଦେଖାଇ ନାହାନ୍ତି । ଆହୁରି ମଧ୍ୟ, ଜଗନ୍ନାଥଙ୍କୁ ସେ ତାଙ୍କ ବ୍ୟାପକତା ଦୃଷ୍ଟିରୁ ନ ଦେଖି, କେବଳ ଶ୍ରୀକୃଷ୍ଣଙ୍କ ପ୍ରତି ନିଜ ଭକ୍ତିଭାବ ଦୃଷ୍ଟିରୁ ହିଁ ଦେଖିଛନ୍ତି । ଅନ୍ୟ ଭାବରେ କହିଲେ, ଏହି ଅଷ୍ଟକର ଲେଖକ ଥିଲେ, ଶ୍ରୀକୃଷ୍ଣଭକ୍ତ ଏବଂ ଶ୍ରୀରାଧାଭକ୍ତ । ତେଣୁ ଶ୍ରୀକୃଷ୍ଣ ଏବଂ ଶ୍ରୀରାଧା ବୃନ୍ଦାବନରେ ଯେଉଁ ଲୀଳା ରଚନା କରିଥିଲେ, ସେହି ଲୀଳା ଉପରେ ଗୁରୁତ୍ୱ ଦେଇ ଏହି ଅଷ୍ଟକ ସେ ଲେଖିଛନ୍ତି । ପ୍ରସଙ୍ଗକ୍ରମେ ଦୁଇ ତିନୋଟି କଥା ଶ୍ରୀକ୍ଷେତ୍ରର ଜଗନ୍ନାଥଙ୍କ ସଂପର୍କରେ ସେ କହିଛନ୍ତି । ଯଥା :—

(କ) ଜଗନ୍ନାଥମହାପ୍ରଭୁ ନୀଳଶୈଳ ଉପରେ ବିରାଜମାନ କରିଛନ୍ତି ।

(ଖ) ସମୁଦ୍ର କୂଳରେ ନୀଳଶୈଳ ଠିଆହୋଇଛି ।

(ଗ) ଜଗନ୍ନାଥଙ୍କ ପାଖରେ ବଳଭଦ୍ର ଏବଂ ସୁଭଦ୍ରା ଅଛନ୍ତି ।

ଏହିତକ ଛାଡ଼ିଦେଲେ, ଜଗନ୍ନାଥଙ୍କର ଅନ୍ୟକିଛି କଥା ଏଥିରେ ନାହିଁ । ଆମେ ବଜ୍ରନିର୍ଘୋଷରେ ପ୍ରଚାର କରୁଛୁ ଯେ, ଜଗନ୍ନାଥଙ୍କର ହାତ ନାହିଁ କି ପାଦ ନାହିଁ । ଅଥଚ ଏହି ଅଷ୍ଟକରେ କୁହାଯାଇଛି ଯେ, ଜଗନ୍ନାଥ ତାଙ୍କ ଦୁଇ ହାତରେ ବଂଶୀ ଧରିଛନ୍ତି । ତେଣୁ ଜଗନ୍ନାଥଙ୍କୁ ଯେପରି ବର୍ଣ୍ଣନା

କରାଯିବା କଥା, ସେପରି କରା ନ ଯାଇ, ଜଣେ କୃଷ୍ଣଭକ୍ତ ତଥା, ତରୁଣ କବିଙ୍କ ନିଜ ଦୃଷ୍ଟିରୁ କୃଷ୍ଣଭକ୍ତିକ ଜଗନ୍ନାଥଙ୍କୁ ବର୍ଣ୍ଣନା କରାଯାଇଛି । କିନ୍ତୁ ଜଗନ୍ନାଥ କେବଳ କୃଷ୍ଣ ନୁହନ୍ତି । ସେ ହେଉଛନ୍ତି, ଶିବ, କାଳୀ, ଗଣେଶ, ସୂର୍ଯ୍ୟ, ରାମଚନ୍ଦ୍ର ଓ ବିଷ୍ଣୁ ସବୁକିଛି । ଏପରିକି, ଚତୁର୍ଦ୍ଧାମୂର୍ତ୍ତିତତ୍ତ୍ୱ ଦୃଷ୍ଟିରୁ ସେ ହେଉଛନ୍ତି ସୃଷ୍ଟିକର୍ତ୍ତା ବ୍ରହ୍ମା । ଏହି 'ଜଗନ୍ନାଥାଷ୍ଟକମ୍' ମହାସମୁଦ୍ରପରି ବ୍ୟାପକ ଜଗନ୍ନାଥଙ୍କୁ, ଗୋଟିଏ କ୍ଷୁଦ୍ର ଜଳାଶୟରୂପେ ଉପସ୍ଥାପନ କରିଛି ସିନା, ମହାପ୍ରାଣ, ମହାମାୟ ଓ ମହିମାମୟ ଜଗନ୍ନାଥଙ୍କୁ ଯଥାର୍ଥ ଭାବରେ ରୂପାୟିତ କରିପାରିନାହିଁ ।

## ସେଥିପାଇଁ ଦରକାର ଶ୍ରୀକ୍ଷେତ୍ରଭିତ୍ତିକ—
## 'ନୂତନ ଜଗନ୍ନାଥାଷ୍ଟକମ୍' :—

ଏବେ ଅଧ୍ୟାପକ ଗୌରୀକୁମାର ବ୍ରହ୍ମା ଏ ଦିଗରେ ଦୃଷ୍ଟିଦେଇ, ଗୋଟିଏ ବହୁଦିନର ଅଭାବ ଦୂର କରି ଦେଇଛନ୍ତି । ଖୋଦ୍ ଜଗନ୍ନାଥଙ୍କ ଉପରେ, ତାଙ୍କର ବିଭିନ୍ନ ବିଶେଷତ୍ୱର ଉଲ୍ଲେଖ ଥାଇ, ଗୋଟିଏ ଜଗନ୍ନାଥାଷ୍ଟକ ଲେଖାଯାଉ ବୋଲି ଅନେକ ଭକ୍ତ ଇଚ୍ଛା କରୁଥିଲେ । ଭକ୍ତମାନଙ୍କର ସେ ଇଚ୍ଛା ଆଜି ବ୍ରହ୍ମାଙ୍କ ମାଧ୍ୟମରେ ରୂପପରିଗ୍ରହ କରିଅଛି । ସେ କିପରି ଭାବରେ ଏଭଳି ଏକ ଅଷ୍ଟକ ଲେଖିବାକୁ ସମର୍ଥ ହେଲେ, ତାହା ସେ 'ନିଜ କଥା'ରେ କହିଅଛନ୍ତି । ଭକ୍ତି ରାଜ୍ୟରେ ଏଭଳି ଅନୁଭୂତିର କଥା କିଛି ନୂତନ ନୁହେଁ । ମହାକବି କାଳିଦାସ, ଜୟଦେବ ଏବଂ ଅନ୍ୟାନ୍ୟ କବିମାନଙ୍କ ରଚନାରେ ଏ ଧରଣର ବିଚିତ୍ର ଅନୁଭୂତି ଏପର୍ଯ୍ୟନ୍ତ ପଣ୍ଡିତ ପରଂପରାରେ ବଞ୍ଚି ରହିଛି । ସେ ଯାହାହେଉ, ଅଧ୍ୟାପକ ବ୍ରହ୍ମାଙ୍କର ମନୋରାଜ୍ୟରେ ଏଭଳି ଏକ "ଜଗନ୍ନାଥଭକ୍ତିକ ଅଷ୍ଟକ"ର ଚିନ୍ତା ହୁଏତ ବହୁ ଆଗରୁ ଜାତ ହୋଇଥିଲା । କୋଡ଼ିଏ ପଚିଶ ବର୍ଷଧରି ହଜାର ହଜାର ପର୍ଯ୍ୟଟକଙ୍କୁ ଜଗନ୍ନାଥଙ୍କ କଥା କହିଲାବେଳେ, ସେହି ଚେତନାର ମୂଳ ହୁଏତ ସୁଦୃଢ଼ ହୋଇ ଉଠିଥିଲା । ସେ କହିବା ପ୍ରକାରେ, ଏବେ ଦିନେ ସନ୍ଧ୍ୟାବେଳେ ଆଗ୍ନେୟଗିରିପରି ତାହା ବାହାରି ପଡ଼ିଲା । ଏହାର ନାମ **"ନୂତନ-ଜଗନ୍ନାଥାଷ୍ଟକମ୍"** ରଖିବା-

ଦ୍ୱାରା, ସେ ଜଣେ ପ୍ରବୀଣ ମନସ୍ତତ୍ତ୍ୱିକର କାର୍ଯ୍ୟ କରିଛନ୍ତି । ଗୋଟିଏ ଅତି-
ପରିଚିତ ସ୍ତବର ନାମରେ କେବଳ 'ନୂତନ' ଶବ୍ଦ ଯୋଗ କରିବାଦ୍ୱାରା
ରଚନାର ପ୍ରସାର ପାଇଁ ସେ ମନେ ମନେ ମାର୍ଗ ପରିଷ୍କାର କରିଦେଇଛନ୍ତି ।
ସରଳ ସୁନ୍ଦର ସଂସ୍କୃତ ଭାଷାରେ ଅନର୍ଗଳ ଭାଷଣଦେଇ ସମଗ୍ର ଭାରତ-
ବର୍ଷରେ କଂପନ ସୃଷ୍ଟି କରିଥିବା ଅଧ୍ୟାପକ ବ୍ରହ୍ମା ଜଣେ ବିଶିଷ୍ଟ ବକ୍ତା ଓ
ସାହିତ୍ୟ ସମାଲୋଚକ ଭାବରେ ପ୍ରସିଦ୍ଧ । ଆଜୀବନ ସୁରଭାରତୀଙ୍କର ଚରମ
ସେବକ ଭାବରେ ପରିଚିତ ବ୍ରହ୍ମାଙ୍କର ପରିଣତ ବୟସରେ ସଂସ୍କୃତ
ସାହିତ୍ୟ ସିସୃକ୍ଷା ବଳବତ୍ତି ହୋଇ ପ୍ରକାଶ ପାଉଛି । ସଂସ୍କୃତଶ୍ଳୋକମାନଙ୍କର
ସୀମିତ-ଶବ୍ଦ ମଧ୍ୟରେ ଯେଉଁ ସବୁ ଭାବ-ସମ୍ପଦ ଗୁମ୍ଫିତ ହୋଇ ରହିଥାଏ,
ସେଗୁଡ଼ିକୁ ହସ୍ତାଗତ କରି, ଶ୍ରୋତାମାନଙ୍କୁ ଆପ୍ୟାୟିତ ଓ ଅନୁକଂପିତ
କରିବାରେ ବ୍ରହ୍ମାଙ୍କର ବ୍ୟାଖ୍ୟାନ ଶକ୍ତି ଓ କୌଶଳ ସର୍ବଥା ପ୍ରଶଂସନୀୟ ।

## 'ନୂତନ ଜଗନ୍ନାଥାଷ୍ଟକମ୍''ରେ ଜଗନ୍ନାଥଙ୍କର ସର୍ବଶ୍ରେଷ୍ଠତ୍ୱ ପ୍ରତିପାଦନ :—

ଅଧ୍ୟାପକ ବ୍ରହ୍ମାଙ୍କର ଏହି ନୂତନ-ଜଗନ୍ନାଥାଷ୍ଟକମ୍ ପ୍ରକୃତରେ
"ଶ୍ରୀକ୍ଷେତ୍ରଭକ୍ତିକ" ହୋଇଛି । କୌଣସି ଭକ୍ତ ଯଦି ବିଭିନ୍ନ ସମୟରେ
ଜଗନ୍ନାଥ ମନ୍ଦିରକୁ ଯାଏ ଏବଂ ଗୋଟିଏ ଦିନର ମାତ୍ର ତଥା ଗୋଟିଏ ବର୍ଷର
ବିଧିବିଧାନ ଲକ୍ଷ୍ୟକରେ, ତାହାହେଲେ, ଜଗନ୍ନାଥ ମହାପ୍ରଭୁଙ୍କୁ ସେ ଯେପରି
ଭାବରେ ଦେଖିବ ଏବଂ ଉପଲବ୍ଧି କରିବ, ସେହି ଦୃଷ୍ଟିରୁ ଅଧ୍ୟାପକ ବ୍ରହ୍ମା
ଜଗନ୍ନାଥଙ୍କର ବିବିଧ ବିଷୟ ବର୍ଣ୍ଣନା କରିଛନ୍ତି । ଜଗନ୍ନାଥଙ୍କୁ ନିଜେ
ଛାଡ଼ିବାକୁ ହେଲେ ଏବଂ ସମଗ୍ର ପୃଥିବୀରେ ଚହଲାଇବାକୁ ହେଲେ,
ଜଗନ୍ନାଥଙ୍କର ଯେଉଁସବୁ ଦିଗ ଉପରେ ଗୁରୁତ୍ୱ ଦିଆଯିବା କଥା, ସେ ସବୁକୁ
ସେ ସୁନ୍ଦର ଭାବରେ ପ୍ରକାଶ କରିଅଛନ୍ତି । ଆଠଗୋଟି ଶ୍ଳୋକମଧ୍ୟରୁ ଛଅଗୋଟି
ଶ୍ଳୋକରେ କଳିଯୁଗରେ ଜଗନ୍ନାଥ କାହିଁକି ସର୍ବଶ୍ରେଷ୍ଠ ଦେବତା, ତାଙ୍କୁ
ପ୍ରଥମେ ପ୍ରତିଷ୍ଠା କରିଥିଲେ କିଏ ଏବଂ କେଉଁଠାରେ, ବର୍ତ୍ତମାନ ତାଙ୍କ ମନ୍ଦିର
ଗୃହପଟେ କେଉଁ କେଉଁ ବିଶିଷ୍ଟ ଦେବଦେବୀ ମନ୍ଦିର ରହିଅଛି,
ସେ କାହିଁକି ଚତୁର୍ଦ୍ଧାମୂର୍ତ୍ତି ବୋଲି କୁହାଯାଆନ୍ତି ଅଥଚ ତିନୋଟି

ବିଗ୍ରହ କାହିଁକି ପୂଜିତ ହୁଅନ୍ତି ଇତ୍ୟାଦି ଇତ୍ୟାଦି କଥା କୁହାଯିବା ଭିତରେ ଜଗନ୍ନାଥଙ୍କୁ ହିଁ ପୁରାଣ ଏବଂ ଇତିହାସ ଦୃଷ୍ଟିରୁ ଚିହ୍ନାଇବାର ଚେଷ୍ଟା କରାଯାଇଛି । ବଡ଼ଦେଉଳର ରତ୍ନବେଦୀ ଉପରେ କେଉଁ କେଉଁ ବିଗ୍ରହ ପୂଜା ପାଆନ୍ତି ଏବଂ ସେମାନେ ଯେଉଁ ଯେଉଁ ରଙ୍ଗରେ ରଂଜିତ ହୋଇଛନ୍ତି, ସମଗ୍ର ମାନବଜାତି ଦୃଷ୍ଟିରୁ ସେଗୁଡ଼ିକ ଭିତରେ କି ତତ୍ତ୍ୱ ରହିଅଛି, ତାହା ସେ ବର୍ଣ୍ଣନ କରିଛନ୍ତି । ପଞ୍ଚମ ଏବଂ ଷଷ୍ଠ ଶ୍ଳୋକରେ ଜଗନ୍ନାଥଙ୍କର ଦଶଗୋଟି ବିଶେଷତ୍ୱ ଗୋଟି ଗୋଟି କରି ଉଲ୍ଲେଖ କରିଛନ୍ତି । ପ୍ରତି ଶ୍ଳୋକର ସରଳାର୍ଥ ଦେବା ସଙ୍ଗେ ସଙ୍ଗେ ଜଗନ୍ନାଥଙ୍କ ବିଶେଷତ୍ୱଗୁଡ଼ିକୁ ଭଲଭାବରେ ବୁଝାଇବାପାଇଁ ପରିଶିଷ୍ଟରେ ଚମତ୍କାର ବ୍ୟାଖ୍ୟାନ ଦେଇଛନ୍ତି । ଯେଉଁମାନେ ଭାରତର ବହୁଅଞ୍ଚଳ ଓ ବହୁ ଦେବଦେବୀ ମନ୍ଦିର ଦେଖିବାପରେ ଜଗନ୍ନାଥ ମନ୍ଦିର ଦେଖିବାକୁ ଆସନ୍ତି, ସେମାନେ ପଚାରନ୍ତି,— "ଆଚ୍ଛା, ଆପଣଙ୍କର ଏହି ଦେବତାଙ୍କର ବିଶେଷତ୍ୱ କ'ଣ ?" ଏ ପ୍ରଶ୍ନ ଶୁଣିବାପରେ ହଠାତ୍ କଉଣି ଉତ୍ତର ଦେବାକୁ ପଡ଼ିବ ଏବଂ କ'ଣ କହିଲେ ଭାରତର ଅନ୍ୟ ସମସ୍ତ ଦେବଦେବୀଙ୍କ ମନ୍ଦିର ତୁଳନାରେ ଜଗନ୍ନାଥ ମନ୍ଦିରର ବିଶେଷତ୍ୱ ଗୁଡ଼ିକ ସୁନ୍ଦର ଭାବରେ ଫୁଟି ଉଠିବ, ସେହି କଥା ଓଡ଼ିଶାର ପ୍ରସିଦ୍ଧ ଓ ପ୍ରବୀଣ ଟୁରିଷ୍ଟ ଗାଇଡ୍ ଭାବରେ ଅଧ୍ୟାପକ ବ୍ରହ୍ମା କହିଆସିଛନ୍ତି । ଜଗନ୍ନାଥଙ୍କର ଅସାଧାରଣ ବିଶେଷତ୍ୱ ଗୁଡ଼ିକର ଗୋଟିଏ ତାଲିକା ପ୍ରସ୍ତୁତ କରିବା ପାଇଁ ହୁଏତ ତାଙ୍କୁ ମଧ୍ୟ ଦିନ ଦିନ ଧରି ଚିନ୍ତାକରିବାକୁ ପଡ଼ିଥିବ । ଜଗନ୍ନାଥଙ୍କର କୃପା ନ ହେଲେ, ତାଙ୍କ ବିଷୟରେ ଚିନ୍ତାକରିବାକୁ ସୁଯୋଗ ମଧ୍ୟ ମିଳିବ ନାହିଁ ବୋଲି, ଲୋକ ବିଶ୍ୱାସ ଅଛି । ପ୍ରତିବର୍ଷ ରଥଯାତ୍ରାବେଳେ ଲୋକେ କହିଥାଆନ୍ତି "ଜଗନ୍ନାଥଙ୍କ କୃପା ନହେଲେ, ଟଙ୍କା ପଇସା ଥାଇ ମଧ୍ୟ, ତାଙ୍କ ରଥଯାତ୍ରା ଦେଖିବାକୁ କୌଣସି ଲୋକ ପୁରୀ ଯାଇ ପାରିବ ନାହିଁ ।" ତେଣୁ, ଜଗନ୍ନାଥଙ୍କ ବିଶେଷତ୍ୱର ତାଲିକା ପ୍ରସ୍ତୁତ କରିବା ପାଇଁ ଶ୍ରୀଯୁକ୍ତ ବ୍ରହ୍ମାଙ୍କୁ ମଧ୍ୟ ବହୁବର୍ଷ ଲାଗିଯାଇଥିବ । ଏ ଦୃଷ୍ଟିରୁ, ଏହି ଅଷ୍ଟକରେ ଥିବା ପଞ୍ଚମ ଓ ଅଷ୍ଟମ ଶ୍ଳୋକ, ଜଗନ୍ନାଥ ଭକ୍ତମାନଙ୍କ ପାଇଁ ତଥା ଜଗନ୍ନାଥଙ୍କ ଦେଶ, ଓଡ଼ିଶାର ଲୋକମାନଙ୍କ ପାଇଁ ବିଶେଷ ଉପାଦେୟ । ଅଧ୍ୟାପକ ବ୍ରହ୍ମା ମତେ ଏକାଧିକଥର କହିଛନ୍ତି "ମୋର କେତେଜଣ ବିଶିଷ୍ଟ ଗୁରୁବନ୍ଧୁ,

ଯେଉଁମାନେ କି ଏବେ ସାହିତ୍ୟ-ରାଜ୍ୟରେ ପ୍ରତିଷ୍ଠିତ ଏବଂ ସେମାନଙ୍କର ଅନୁଗାମୀ ଆଉ କେତେଜଣ ବରିଷ୍ଠ ସାହିତ୍ୟସେବୀ ଓ ଲେଖକ ଏହି ଅଷ୍ଟକ ଦେଖିବାପରେ ଈର୍ଷା-ଅନଳରେ ଜଳିଉଠିବେ। ତଥାପି, ମୁଁ ଭାବୁଛି, ଜଗନ୍ନାଥଙ୍କ ନାମଟା ଅନ୍ତତଃ ସେମାନଙ୍କ ମନରେ ଜାଗିଉଠିବାରୁ, ସେମାନେ କରୁଣାମୟ ଜଗନ୍ନାଥଙ୍କର ଆଶୀର୍ବାଦ ଲାଭକରିବାକୁ ସମର୍ଥ ହେବେ"। ସେ ଯାହାହେଉ, ଜଗନ୍ନାଥଙ୍କ ସଂପର୍କରେ ସୁପରିଚିତ ଶିଖରିଣୀ ବୃତ୍ତରେ, ଅତି ସରଳ ଭାଷାରେ ଜଗନ୍ନାଥଙ୍କର ବିବିଧ ତଥ୍ୟ, ଇତିହାସ, କିମ୍ବଦନ୍ତୀ, ପ୍ରଭୃତି ସମ୍ବଳିତ ଏଭଳି ଏକ ଅଷ୍ଟକ ରଚନାକରି ଶ୍ରୀଯୁକ୍ତ ବ୍ରହ୍ମା, ଜଗନ୍ନାଥ ଭକ୍ତମାନଙ୍କର ପରମ ଆଦରଣୀୟ ହୋଇଉଠିବେ। କଥାରେ ତ ଅଛି—

"ଯିଏ ଖୁଆଇଛି ମାଣ୍ଡିଆ ଜାଉ
ସିଏ ଏକା ଏବେ ··· ନେଉ"।

ଏହି ଗାଁଉଲି କଥାଟାକୁ ଶିଷ୍ଟତାର ପୀଠ ଉପରେ ସ୍ଥାପନକରି ଏ କଥା କୁହାଯାଇପାରେ, (ଅଧ୍ୟାପକ ବ୍ରହ୍ମାଙ୍କ ବିଶ୍ୱାସ ଅନୁସାରେ ଜଗନ୍ନାଥ ମହାପ୍ରଭୁଙ୍କ କୃପାବଳରେ ସେ ଏହି ଅଷ୍ଟକ ରଚନା କରିଥିବାରୁ,) "ଯେଉଁ ଜଗନ୍ନାଥଙ୍କ କୃପାରୁ ଏଭଳି ସରଳ, ସୁନ୍ଦର ଓ ସୁସଂଗତ ଅଷ୍ଟକ ରଚିତ ହୋଇପାରିଛି, ସେହି ଜଗନ୍ନାଥ ହିଁ ଏହାର ଜନପ୍ରିୟତା ଏବଂ ପ୍ରଚାର-ପ୍ରସାର କଥା ବୁଝିବେ"।

"ଶ୍ରୀଜଗନ୍ନାଥସମର୍ପଣମସ୍ତୁ"।

ଇତି

**ଶ୍ରୀ ଦୁଃଖିଶ୍ୟାମ ପଟ୍ଟନାୟକ**
ସଂପାଦକ, ସଂସ୍କୃତି ବିଭାଗ,
ଓଡ଼ିଶା

ଡି- ୧୧୭, ମ୍ୟୁଜିୟମ୍ ଫ୍ଲାଟସ୍
ଭୁବନେଶ୍ୱର-୭୫୧୦୧୪
ତା- ୧୧-୯-୧୯୯୧
ଗଣେଶ ଚତୁର୍ଥୀ

# ନିଜକଥା

ଜଗନ୍ନାଥ ମହାପ୍ରଭୁଙ୍କ କୃପାବଳରେ ମୁଁ ପର୍ଯ୍ୟଟକମାନଙ୍କର 'ପଥକ' (Tourist Guide) ହେବାପରେ, ଘରଚର ଓ ପୃଥିବୀର ବହୁ ବଶିଷ୍ଟ ଲୋକଙ୍କର ସଂସ୍ପର୍ଶରେ ଆସିବାକୁ ସମର୍ଥ ହେଲି । ଏବେ ପ୍ରାୟ ବର୍ଷକତଳେ (1990ରେ) ଜଣେ ହିମାଳୟ ଅଞ୍ଚଳର ଭଦ୍ରଲୋକ ପୁରୀ-ସମୁଦ୍ର କୂଳରେ, ମୋର ପରିଚୟ ପାଇ, କଥାଭାଷା ହେଲେ । ଅନେକ କଥା ପଚାରିଲେ । ପ୍ରସଙ୍ଗକ୍ରମେ କହିଲେ—"ଜଗନ୍ନାଥ ଏତେ ବଡ଼ ଦେବତା, ଅଥଚ, ମୁଁ ଯେତେଥର ପୁରୀ ଆସୁଛି, ସବୁବେଳେ ଶୁଣୁଛି, "ଜଗନ୍ନାଥ ସ୍ୱାମୀ ନୟନପଥ-ଗାମୀ ଭବତୁ ମେ" । ଏହାକୁ ଓଡ଼ିଶାର କୌଣସି ଲୋକ ଲେଖିନାହିଁ । ତେବେ ମୋର ପ୍ରଶ୍ନ ହେଉଛି, ଜଗନ୍ନାଥଙ୍କ ଉପରେ ଏଭଳି ଗୋଟିଏ ସଂସ୍କୃତ-ସ୍ତବ ରଚନା କରିବାକୁ କ'ଣ କୌଣସି କବି ଓଡ଼ିଶାରେ ଜନ୍ମହୋଇ ନାହାନ୍ତି ?"

ମୁଁ ତାଙ୍କ ପ୍ରଶ୍ନରେ ଟିକିଏ ବିଚଳିତ ହୋଇଗଲି । କିନ୍ତୁ କଅଣ ଉତ୍ତର ଦେବି, ସେଥିପାଇଁ ଜଗନ୍ନାଥଙ୍କୁ ଚିନ୍ତା କଲି । ତାଙ୍କର ପ୍ରଶ୍ନ ସରୁ ସରୁ କହିଲି—"ଆମ ଓଡ଼ିଶାର ଲୋକେ ବଡ଼ ଉଦାର । ସେମାନେ କେବଳ ନିଜ ଦେଶର ପଣ୍ଡିତଙ୍କ ଦ୍ୱାରା ରଚିତ ସ୍ତବ ପାଠକରିବାକୁ ଇଚ୍ଛାକରନ୍ତି ନାହିଁ । ସ୍ତବଟିଏ ଯେ ଲେଖିଥାଉ, ଯଦି ତାହା ଭଲ ଲାଗିଲା, ତାକୁ ପାଠକରିବାକୁ ସେମାନେ ଭଲ ପାଆନ୍ତି । ପ୍ରାଦେଶିକ ସଂକୀର୍ଣ୍ଣତା ଓଡ଼ିଆଙ୍କର ନାହିଁ" ଇତ୍ୟାଦି ।

ଏ ସଂପର୍କରେ ମୋର କହିବାର କଥା, ପ୍ରାଚ୍ୟ-ଜ୍ଞାନ ବାରିଧି ମୋର ପିତୃଦେବ ପଣ୍ଡିତ ଚନ୍ଦ୍ରଶେଖର ବ୍ରହ୍ମା ଅନେକ ସଭାରେ କହୁଥିଲେ— "ଏହି 'ଜଗନ୍ନାଥାଷ୍ଟକ' ଆଦି ଶଙ୍କରଙ୍କର ହୋଇନପାରେ । ଏଥିରେ ରାଧାପ୍ରେମ ରହିଅଛି । ସେକାଳର ଶୈବ ଓ ବୈଷ୍ଣବଙ୍କ ମଧ୍ୟରେ ଥିବା ବୈରଭାବ ଦୃଷ୍ଟିରୁ ଏହା ଶଙ୍କରଙ୍କର କେବେ ହୋଇ ନ ପାରେ" । ତେବେ, ସେ ଯାହାଙ୍କୁ କୃପା କରିବେ, କେବଳ ସେଭଳି ଜଣେ ବ୍ୟକ୍ତି ତାଙ୍କ ସଂପର୍କରେ ମନୋରମ ସ୍ତବଟିଏ ଲେଖିପାରିବ" ।

1938ରେ ମୁଁ ଆଇ: ଏ: (ସେକାଳର F. A.)ର ଛାତ୍ର । ଏହାପୂର୍ବରୁ ସାଂପ୍ରଦାୟିକ ଦର୍ଶନର ଘନଘଟା ସଂପର୍କରେ ମୋର ଗଭୀର ଧାରଣା ନ ଥିଲା । ଅଧ୍ୟାପକ ହେବାପରେ ବହୁଗ୍ରନ୍ଥ ପଢ଼ିଲି ଓ ଦାର୍ଶନିକମାନଙ୍କର ମତବାଦ ତଥା ପ୍ରତ୍ୟେକ 'ମତ'ର ଆଚରଣବିଧି ସଂପର୍କରେ ଅନେକ କଥା ଜାଣିଲି । ମୋର କ୍ରମେ କ୍ରମେ ଏହି ଧାରଣା ଦୃଢ଼ ହୋଇ ଉଠିଲା ଯେ, ଏହି 'ଜଗନ୍ନାଥାଷ୍ଟକ' କେବେହେଲେ ଶଙ୍କରାଚାର୍ଯ୍ୟଙ୍କର ହୋଇ ନ ପାରେ । ପଣ୍ଡିତ ନୀଳକଣ୍ଠ ଦାସ ତାଙ୍କର 'ଓଡ଼ିଆ ସାହିତ୍ୟର କ୍ରମପରିଣାମ' ଲେଖୁଥିଲା-ବେଳେ ମୁଁ ବରାବର ତାଙ୍କ ପାଖକୁ ଯାଉଥିଲି । କଥାକାର ସୁରେନ୍ଦ୍ର ମହାନ୍ତିଙ୍କର ଶ୍ୱଶୁର ତଥା ପ୍ରଜାତନ୍ତ୍ର ସଂପାଦକ ୬ମଧୁସୂଦନ ମହାନ୍ତି, ମୋର ଶ୍ୱଶୁର କବି ଗୋଦାବରୀଶ ମହାପାତ୍ର ଏବଂ ଖ୍ରୀଷ୍ଟ କଲେଜରେ ମୋର ସହକର୍ମୀ ତଥା ପ୍ରତ୍ନତତ୍ତ୍ୱବିତ୍ ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ ମଧ୍ୟ ବରାବର ଯାଉଥିଲେ । ପଣ୍ଡିତ ନୀଳକଣ୍ଠ ଦାସଙ୍କର ସ୍ଥିର-ନିଶ୍ଚିତ ମତ ଯେ, ଏହି ଜଗନ୍ନାଥାଷ୍ଟକ କୃଷ୍ଣଭକ୍ତ ଚୈତନ୍ୟଦେବଙ୍କର ରଚନା । ଏହି ସଂପର୍କରେ ତୁଳନାତ୍ମକ ସାହିତ୍ୟ-ଅଧ୍ୟୟନରେ ଅବଗାହୀ ପଣ୍ଡିତ ଶ୍ରୀଯୁକ୍ତ ଦୁଃଖିଶ୍ୟାମ ପଟ୍ଟନାୟକ ଏ ପୁସ୍ତକର ମୁଖବନ୍ଧରେ ଯାହା ଲେଖିଛନ୍ତି ; ତାହା ଅତ୍ୟନ୍ତ ଯୁକ୍ତିଯୁକ୍ତ । ସୁତରାଂ, ଅବଶ୍ୟ ପଠନୀୟ ।

ମୋର ବହୁବର୍ଷତଳୁ ଏହି ଧାରଣା ବଦ୍ଧମୂଳ ହୋଇଛି ଯେ, ଶଙ୍କରାଚାର୍ଯ୍ୟଙ୍କର ବୋଲି କୁହାଯାଉଥିବା "ଜଗନ୍ନାଥାଷ୍ଟକ" ଆଦୌ ଶ୍ରୀକ୍ଷେତ୍ର-ଭିତ୍ତିକ ନୁହେ । ଏହା ହେଉଛି **ଶ୍ରୀକୃଷ୍ଣ ଭିତ୍ତିକ** । ଏଥିରେ ଜଗନ୍ନାଥଙ୍କ କଥା ନାମକୁମାତ୍ର ଅଛି । ସମୁଦ୍ରତୀର, ନୀଳଶୈଳ, ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା— ଏହିତକ ଛାଡ଼ିଦେଲେ, "ଆମ ଜଗନ୍ନାଥ"ଙ୍କ କଥା ଆଉ କିଛି ନାହିଁ । "ରଥାରୂଢ଼ୋ"— ଏହି ଶ୍ଳୋକରେ ଯାହା ଅଛି, ତାହା ଯେକୌଣସି କୃଷ୍ଣମନ୍ଦିରର ରଥଯାତ୍ରାକୁ ମଧ୍ୟ ବୁଝାଇପାରେ ରଥଚକ ସଂଖ୍ୟା ୪୨ (ଏହା ଅତ୍ୟନ୍ତ ରହସ୍ୟମୟ) ଓ ଛେରାପହରା, ଯେଉଁ ରଥଯାତ୍ରା ବର୍ଣ୍ଣନା ପ୍ରସଙ୍ଗରେ ନାହିଁ, ତାହା ଆମ ପୁରୀର ରଥଯାତ୍ରାର ବୋଧକ ହେବବା କାହିଁକି ? ରଥଯାତ୍ରା-ଶ୍ଳୋକରେ ପୁଣି ଲକ୍ଷ୍ମୀଙ୍କୁ ସ୍ମରଣ କରାଯାଇଛି । ଅଥଚ,

ଏଥିରେ ଲକ୍ଷ୍ମୀଙ୍କର ପ୍ରାଧାନ୍ୟ ଆଦୌ ନାହିଁ ।

ଏହା ବ୍ୟତୀତ, ଏହି ପ୍ରସିଦ୍ଧ ଜଗନ୍ନାଥାଷ୍ଟକରେ ସତ୍-କବିତ୍ୱର କପଟ ଅଭାବ ରହିଅଛି, ତାହା ଦୁଃଖିଶ୍ୟାମ ବାବୁ ଯୁକ୍ତିଯୁକ୍ତଭାବରେ ପ୍ରତିପାଦନ କରିଛନ୍ତି । ତେଣୁ, ଏହି ଜଗନ୍ନାଥାଷ୍ଟକ ଶ୍ରୀକ୍ଷେତ୍ରଭିତ୍ତିକ ନୁହେଁ । ଏହା ଜଗନ୍ନାଥଙ୍କ ବିଭିନ୍ନ ବିଶେଷତ୍ୱର ବାର୍ତ୍ତାବହ ନୁହେ । ଏହା ହେଉଛି ଅଧିକ ପରିମାଣରେ ଶ୍ରୀକୃଷ୍ଣଭିତ୍ତିକ ଏକ ଅଷ୍ଟକ ।

1938ରୁ ଅର୍ଥାତ୍ ମୋ ପିତାଙ୍କ ମତ ଶୁଣିବା ସମୟରୁ, ସାମାନ୍ୟ-ଭାବରେ ଏହି ଶ୍ରୀକୃଷ୍ଣଭିତ୍ତିକ ଜଗନ୍ନାଥାଷ୍ଟକମ୍ ପ୍ରତି ମୋର ଅତ୍ୟଧିକ-ଅନୁରାଗ କମିଯାଇଥିଲା । ମୋଠାରେ ତ କବିତ୍ୱ ନ ଥିଲା, କେବଳ ବାଗ୍ମିତା ବଳରେ ଏବଂ ଈଶ୍ୱରଦତ୍ତ ମଧୁର କଣ୍ଠରେ ଶତ ଶତ ଶ୍ଳୋକ ଆବୃତ୍ତିକରି ଅସଂଖ୍ୟ ସଭା ସମିତିରେ ଜନମନରଂଜନ କରିବାକୁ ଚେଷ୍ଟା କରୁଥିଲି । ଗତ କେତେ ବର୍ଷ ମଧ୍ୟରେ ଅନେକଙ୍କୁ କହିଛି— "ଏହି ଜଗନ୍ନାଥାଷ୍ଟକରେ ଜଗନ୍ନାଥଙ୍କ କଥା ବିଶେଷ କିଛି ନାହିଁ । ଶ୍ରୀକୃଷ୍ଣଙ୍କ କଥାହିଁ ଅଧିକଭାବରେ ବର୍ଣ୍ଣିତ ହୋଇଛି । ତେଣୁ ଶଙ୍କରାଚାର୍ଯ୍ୟଙ୍କ ଦେବୀ ସ୍ତୋତ୍ରରେ ଯେପରି ଦୁର୍ଗାଙ୍କର ବିଭିନ୍ନ ବିଶେଷତ୍ୱ ବର୍ଣ୍ଣିତ ହୋଇଅଛି ଏବଂ ସୁବିଖ୍ୟାତ ମହିମ୍ନ ସ୍ତବରେ ଯେପରି ଶିବଙ୍କର ବିଭିନ୍ନ ବିଶେଷତ୍ୱ ଫୁଟି ଉଠିଛି, ଆମ ଜଗନ୍ନାଥଙ୍କର ବିଭିନ୍ନ ବିଶେଷତ୍ୱ ଥାଇ ସେହିପରି ଗୋଟିଏ ଅଷ୍ଟକ ଲେଖନ୍ତୁ" । ଅନେକ ପଣ୍ଡିତ ଶତକ ଲେଖିଛନ୍ତି । କିନ୍ତୁ ପାଞ୍ଚ ମିନଟ୍ ଭିତରେ ବୋଲିଯାଇ ପାରିବାଭଳି ଶିଖରିଣୀବୃତ୍ତର ଗୋଟିଏ ଅଷ୍ଟକ କେହି ଲେଖି ନାହାନ୍ତି । ମୁଁ ମଧ୍ୟ ଅନୁଭବ କରୁଥାଏ, ଯେଉଁଦିନ ସେ କୃପାକରିବେ, ସେଦିନ ଗୋଟିଏ ପଙ୍ଗୁ ହେଲେ ମଧ୍ୟ ଗିରିଲଙ୍ଘନ କରିପାରିବ । ଆମ ସମୟରେ ତ ପୁରୀର ପଣ୍ଡିତ ତଥା ମୋର ପରମ ବନ୍ଧୁ ସଦାଶିବ ରଥଶର୍ମା ହେଉଛନ୍ତି "ଜଗନ୍ନାଥଙ୍କ କୃପାବଳରେ ପର୍ବତକୁ ଡେଇଁ ପାରିବାର" ସର୍ବଶ୍ରେଷ୍ଠ ଉଦାହରଣ ।

ଚଳିତ ବର୍ଷ ( 1991 ) ପନ୍ଦ୍ରଜ୍ଞର ପୂର୍ବଦିନ ଜଗନ୍ନାଥଙ୍କୁ ପ୍ରାର୍ଥନା କଲି, "ଆସନ୍ତା କାଲି ନୂଆବର୍ଷ । ମୋର ଇଚ୍ଛା, ତୁମର କମ୍ବଦନ୍ତୀ, ଇତିହାସ ଏବଂ ବିଭିନ୍ନ ବିଧିବିଧାନର ଉଲ୍ଲେଖଥିବା ଶହେଗୋଟି ଶ୍ଳୋକ ଲେଖିବି । ତାହାର ନାମ ରଖିବି "ଜଗନ୍ନାଥ ଗୌରବ ଶତକମ୍" । କାଲି ପନ୍ଦ୍ରଜ୍ଞ ଦିନଠାରୁ ପ୍ରତିଦିନ ଗୋଟିଏ ଗୋଟିଏ ଶ୍ଳୋକ ଲେଖିବାପାଇଁ, ମତେ ଶକ୍ତି ଦିଅ" । କୌଣସି କାରଣରୁ ରାତିରେ ନିଦ ହେଲନାହିଁ । ଅସୁସ୍ଥତା ବୋଧକଲି । ପ୍ରାୟ ପାଞ୍ଚଟାବେଳକୁ ଟିକିଏ ଭଲ ଲାଗିଲା । ଉଠି ବସିଲି, ଗୋଟିଏ ଶ୍ଳୋକ ଲେଖିବାପାଇଁ । ଆଶ୍ଚର୍ଯ୍ୟର କଥା, ଦିନ ଦଶଟା ପର୍ଯ୍ୟନ୍ତ ମତେ କେହି ଡାକି ନାହାନ୍ତି । ଦଶଟାବେଳେ କାଗଜ ସରିଗଲା । ଟିକିଏ ଅଟକି ଗଲି । ଗଣିଲି ଯେ, ଶହେ କୋଡ଼ିଏ ଶ୍ଳୋକ ହୋଇଯାଇଛି । ସବୁଦିନ ସକାଳବେଳା ଏକାଧିକ ଲୋକ ଆସିଥାଆନ୍ତି । କିନ୍ତୁ ସେଦିନ ଦଶଟାପର୍ଯ୍ୟନ୍ତ କେହି ଆସି ନ ଥିଲେ । ଶହେ କୋଡ଼ିଏ ଶ୍ଳୋକ ମୁଁ କିପରି ଲେଖିଲି, ନିଜେ ବିସ୍ମିତ ହେଲି । ତାଙ୍କର ଦୁଇ ଚକାଆଖିକୁ ମନେ ପକାଇ ଭାବ-ବିହ୍ୱଳ ହେବା ସଙ୍ଗେ ସଙ୍ଗେ ଅଶ୍ରୁପାତ କଲି । ତାଙ୍କ କୃପାର କୃତଜ୍ଞତା ଜଣାଇବାପାଇଁ ଟିକିଏ ଅଶ୍ରୁ ଛଡ଼ା ମୋର ଆଉ କ'ଣ ବା ଅଛି !! ଏବେ ଜଗନ୍ନାଥଙ୍କ ଉପରେ ସର୍ବମୋଟ ଦୁଇଶହ ଶ୍ଳୋକ ହୋଇଗଲା । (ଏହି ଅଷ୍ଟକକୁ ମିଶାଇ) ଏବଂ "ଜଗନ୍ନାଥ-ଜୟଗାନମ୍" ନାମରେ ସେହି ଦୁଇଶହ ଶ୍ଳୋକ, ଇଂରାଜୀ ଏବଂ ହିନ୍ଦୀ ଅନୁବାଦ ସହିତ ପ୍ରକାଶ କରିବାକୁ ସ୍ଥିରକରିଛି ।

୩୦-୭-୯୧ରେ ଜଗନ୍ନାଥଙ୍କୁ ଦେଖିବାକୁ ପୁଣି ଯାଇଥିଲି । ଗଲାବେଳକୁ କବାଟ ବନ୍ଦ ଥିଲା । ନାଟ ମନ୍ଦିରରେ ବହୁ ଭକ୍ତ ଅପେକ୍ଷା କରିଥିଲେ । କବାଟ ଫିଟିଲା । ରତ୍ନବେଦି ଆଡ଼କୁ ଚାହିଁଲି । ଯାହା ଦେଖିଲି, ତାହା ମୋର ଚକ୍ଷୁ ଭ୍ରମବୋଲି ପ୍ରଥମେ ଭାବିଲି । ପରେ ଅନୁଭବ କଲି ଯେ, 'ପ୍ରଭୁ'ଙ୍କର କରୁଣା ମୋ ପ୍ରତି ରହିଅଛି ।

ସଂଧ୍ୟାରେ ଫେରିଲି । ହଠାତ୍ ରାତି ଆଠଟାରେ ଇଚ୍ଛାହେଲା 'ଜଗନ୍ନାଥାଷ୍ଟକମ୍' ଭଳି (ସେହି ଶିଖରିଣୀ ବୃତ୍ତରେ) ଗୋଟିଏ ଶ୍ଳୋକ ଲେଖିବି, ଯାହାକି ଅତି ସରଳ ହେବ । ଗୋଟିଏ ଲେଖୁ ଲେଖୁ ଆଠଟି

ଲେଖିହୋଇଗଲା । ପରେ ଅବଶ୍ୟ ଠାଏ ଦୁଇଠା ଟିକିଏ ବଦଳାଇ ଦେଲି । ମୋର ମନେ ପଡ଼ିଗଲା, ଭକ୍ତକବି ସାରଳା ଦାସ, ପୃଥିବୀର ସବୁ ବୃହତ୍ତ ମହାଭାରତ (ବ୍ୟାସଙ୍କ ମହାଭାରତଠାରୁ ଗୁରୁ) ଲେଖିଲାବେଳେ ଅନୁଭବ କରୁଥିଲେ ଯେ, ପ୍ରକୃତରେ ସେ ସେହି ପୁରାଣ ଲେଖିଲାବେଳେ ମା' ସାରଳାଚଣ୍ଡୀ ତାଙ୍କୁ ଡାକିଦେଉଥିଲେ । ( dictate କରୁଥିଲେ ) ଏବଂ ସେ ଯାହା ଶୁଣୁଥିଲେ, ତାକୁ ଲେଖିଦେଉଥିଲେ । କବି ଲେଖିଛନ୍ତି—

"ଶୂଦ୍ର ମୁନି ସାରଳା ଅଟେ ଚଣ୍ଡୀପୁତ୍ର" ।
ସେ ଦେବୀ ଶ୍ରୀଦରେ ଯାହା କହଇ ତାହା ମୁଁ ଲେଖଇ
ମୁହିଁ ଅକିଞ୍ଚନ ମୂର୍ଖ, ମୋର ଦୋଷ ନାହିଁ ।"

ମୁଁ ଏହି ନୂତନ ଜଗନ୍ନାଥାଷ୍ଟକମ୍ ଲେଖିସାରିବାପରେ ଅନୁଭବ କଲି ଯେ, କବିଙ୍କର ଏହି ଅନୁଭୂତି ଏକାବେଳକେ ସତ୍ୟ । ପ୍ରାୟ ଦୁଇଘଣ୍ଟା ଲେଖିସାରିବା ପରେ ମୁଁ ଦେଖିଲି, ଶ୍ରୀକ୍ଷେତ୍ରର ପ୍ରସିଦ୍ଧ ଜଗନ୍ନାଥ ମନ୍ଦିର, ଦେବତାଙ୍କର ବିଗ୍ରହ ଗଠନ, ଜାତିଭେଦର ବିନାଶକାରୀ ମହାପ୍ରସାଦ, ଛେରାପହରା ଓ ୪୨ ଚକ ବିଶିଷ୍ଟ ନନ୍ଦିରଥ-ଯାତ୍ରା, ନବକଳେବର ତଥା ଜଗନ୍ନାଥଙ୍କ ଗୃହପୃଷ୍ଠରେ ଏବେ ରହିଥିବା ବିଶିଷ୍ଟ ମନ୍ଦିରମାଳା ଇତ୍ୟାଦି ଇତ୍ୟାଦି ଠିକ୍ ଆଗରୁ ସଜାଇକରି ମତେ କିଏ ମନ ଭିତରେ ଥାଇ କହିଦେଇଛି ଓ ଏହି 'ପଙ୍କ୍ତି' ଅଲ୍ପକ୍ଷଣରେ ଗିରିଲଙ୍ଘନ କଲାପରି ଲେଖିଯାଇଛିମାତ୍ର ।

ତେଣୁ ଏହି ଅଷ୍ଟକର ନାମ ରଖିଲି "ନୂତନ ଜଗନ୍ନାଥାଷ୍ଟକମ୍" ଏବଂ ଶ୍ରୀ ଜଗନ୍ନାଥଙ୍କ ଚରଣତଳେ ମନେ ମନେ ଏହାକୁ ସମର୍ପଣ କଲି ।

## କୃତଜ୍ଞତା ଜ୍ଞାପନ :—

ଏହି ପ୍ରସଙ୍ଗରେ ଦୁଇଜଣ ବିଶିଷ୍ଟ ବ୍ୟକ୍ତିଙ୍କୁ ଗଭୀର କୃତଜ୍ଞତା ଜଣାଉଅଛି । ଜଣେ ହେଉଛନ୍ତି ଓଡ଼ିଶା ସରକାରଙ୍କ ସଂସ୍କୃତି ବିଭାଗର ସଂପାଦକ ଶ୍ରୀଯୁକ୍ତ ଦୁଃଖିଶ୍ୟାମ ପଟ୍ଟନାୟକ ଏବଂ ଆଉଜଣେ ହେଉଛନ୍ତି ଭୁବନେଶ୍ୱରର Regional College of Management ର ପ୍ରଫେସର୍ ଶ୍ରୀଯୁକ୍ତ ଶିତିକଣ୍ଠ ମିଶ୍ର ।

ଅଷ୍ଟକ ଶୁଣିସାରିବାପରେ ଉଭୟ ବନ୍ଧୁ ଶ୍ଳୋକମାନଙ୍କ ଉପରେ ତଥ୍ୟବହୁଳ notes ଦେବାପାଇଁ ମତେ ପରାମର୍ଶ ଦେଇଥିଲେ । ସେହି ଅନୁସାରେ, ଯେଉଁ ସବୁ ବିକ୍ଷିପ୍ତ ଚିନ୍ତା, ଶ୍ଳୋକ ରଚନାବେଳେ ମୋ ମନରେ ଖେଳିବୁଲୁଥିଲା, ସାଧାରଣ ପାଠକମାନଙ୍କ ପାଇଁ ସେଗୁଡ଼ିକ ଯତ୍ନର ସହିତ ଲିପିବଦ୍ଧ କରିବାପାଇଁ ଚେଷ୍ଟାକରିଅଛି । ଦୁଃଖିଶ୍ୟାମ ବାବୁଙ୍କ ସହିତ ପ୍ରସିଦ୍ଧ ଜଗନ୍ନାଥାଷ୍ଟକ ସମ୍ପର୍କରେ ଗତ କେତେ ବର୍ଷ ମଧ୍ୟରେ ବେଳେବେଳେ ମୋର ବହୁ ଆଲୋଚନା ହୋଇଛି । ତେଣୁ ମୁଖବନ୍ଧଟିଏ ଲେଖିଦେବାପାଇଁ ମୁଁ ଅନୁରୋଧ କରିବାମାତ୍ରେ, ସେ ସ୍ୱୀକୃତି ଦେଇଥିଲେ । ତାଙ୍କର ମୁଖବନ୍ଧ ଅନେକ ପାଠକଙ୍କ ମନରେ ବିନୁସ୍ୱର ତରଙ୍ଗ ଖେଳାଇ ଦେବ । ପୁରୀର ସଙ୍ଗୀତବିଶାରଦ, ତନ୍ତ୍ରସାଧକ, ବାଣୀଭୂଷଣ ତଥା ମୋର ଅନୁଜ ପଣ୍ଡିତ ନିରଞ୍ଜନ ବ୍ରହ୍ମା, ବିଖ୍ୟାତ ଭାଷାବିଜ୍ଞାନୀ ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ, କଟକ ଖ୍ରୀଷ୍ଟ କଲେଜର ଅଧ୍ୟାପକ ଡକ୍ଟର ପ୍ରଫୁଲ୍ଲ କୁମାର ଦାଶ, ଉତ୍କଳ ବିଶ୍ୱବିଦ୍ୟାଳୟର ସଂସ୍କୃତ ବିଭାଗର ଡକ୍ଟର ପ୍ରଫୁଲ୍ଲ କୁମାର ମିଶ୍ର, ଜଗନ୍ନାଥତତ୍ତ୍ୱ ଗବେଷକ ତଥା ଆଶୁକବି ଶ୍ରୀ ଗୋପୀନାଥ ସେନାପତି, ବାଣପୁରର ସ୍ୱନାମଧନ୍ୟ କବିରାଜ ଶ୍ରୀଯୁକ୍ତ ରଘୁନାଥ ମହାପାତ୍ର, କଟକର ପ୍ରବୀଣ ଆଇନଜ୍ଞାତା ତଥା ସଂସ୍କୃତ-ସେବକ ଶ୍ରୀଯୁକ୍ତ ବିଦ୍ୟାସିଂହ ମିଶ୍ର, ପୁରୀ ଗୋପବନ୍ଧୁ ଆୟୁର୍ବେଦ ମହାବିଦ୍ୟାଳୟର ଅଧ୍ୟକ୍ଷ, ସଂପ୍ରତିକ ଓଡ଼ିଶାର ପ୍ରସିଦ୍ଧ ସଂସ୍କୃତ କବି, ପଣ୍ଡିତ ପ୍ରବୋଧ କୁମାର ମିଶ୍ର, ଖୋର୍ଦ୍ଧା ପ୍ରାଣନାଥ ମହାବିଦ୍ୟାଳୟର ଅଧ୍ୟାପକ ପ୍ରଫୁଲ୍ଲ କୁମାର ପାଇକରାୟ, ଓଡ଼ିଶା କୃଷିଭିତ୍ତିକ ଶିଳ୍ପ ନିଗମର ଅଧ୍ୟକ୍ଷ ଶ୍ରୀଯୁକ୍ତ ଜୟଦେବ ପଣ୍ଡା, ମୁଖବନ୍ଧରେ ଥିବା ଖଣ୍ଡନ ମଣ୍ଡନାତ୍ମକ ଆଲୋଚନାର ନୂତନ ତଥ୍ୟ ଯେତିକି ଉପଭୋଗକରି ଅଛନ୍ତି, ସେତିକି ଆଗ୍ରହର ସହିତ ଏହି ନୂତନ ଜଗନ୍ନାଥାଷ୍ଟକର ଆଶୁ ପ୍ରକାଶନ ନିମନ୍ତେ ମତେ ପରାମର୍ଶ ଦେଇଛନ୍ତି ।

ସ୍ୱତଃ ପ୍ରବୃତ୍ତ ଭାବରେ ପ୍ରଫେସର୍ ଶିତିକଣ୍ଠ ମିଶ୍ର ଏହି ଅଷ୍ଟକର ପ୍ରକାଶନ ଦାୟିତ୍ୱ ଗ୍ରହଣ କରିବାକୁ ଇଚ୍ଛାପ୍ରକାଶ କରି ମତେ ଅନୁକଂପିତ କରିଅଛନ୍ତି । ଏହି ଅଷ୍ଟକର ବହୁଳ ପ୍ରସାର କିପରି ଘଟିବ, ସେ ସଂପର୍କରେ

ତାଙ୍କର ଉତ୍କଣ୍ଠା ପ୍ରକାଶକରି ଏହି ନୂତନ ଅଷ୍ଟକ ପ୍ରତି ତାଙ୍କର ପରମ ଗ୍ରାହକତା ପ୍ରଦର୍ଶନ କରିଅଛନ୍ତି ।

ସେଥିପାଇଁ ଶ୍ରୀଯୁକ୍ତ ଦୁଃଖିଶ୍ୟାମ ପଟ୍ଟନାୟକ ଏବଂ ଶ୍ରୀଯୁକ୍ତ ଶିତିକଣ୍ଠ ମିଶ୍ରଙ୍କୁ ମୋର ଗଭୀର କୃତଜ୍ଞତା ପୂର୍ଣ୍ଣିଥରେ ଜ୍ଞାପନ କରୁଅଛୁ ।

ଏଥର ପ୍ରକାଶନରେ ଶ୍ରୀମାନ୍ ସୁଧାକର ପ୍ରଧାନ ଶ୍ରମ ସ୍ୱୀକାରକରି ଆଶୀର୍ବାଦ ଭାଜନ ହୋଇଛନ୍ତି । ମୋର ଓଡ଼ିଆ ଷ୍ଟେନୋ ଶ୍ରୀମାନ୍ ନକୁଳ ଚନ୍ଦ୍ର ସାହୁ ଅଳ୍ପ ସମୟରେ ଓ ମନୋଜ୍ଞ ଅକ୍ଷରରେ ଏହି ପୁସ୍ତିକାର ପାଣ୍ଡୁଲିପି ପ୍ରସ୍ତୁତକରି ମୋର ଆଶୀର୍ବାଦ ଭାଜନ ହୋଇଛନ୍ତି । ଗତ ଦୁଇବର୍ଷ ଭିତରେ ସେ ମୋର ପ୍ରାୟ ସମସ୍ତ ସଂସ୍କୃତ ରଚନାର ପାଣ୍ଡୁଲିପି ପ୍ରସ୍ତୁତ କରିଛନ୍ତି ।

। ଇତି ।

**ଗୌରୀକୁମାର ବ୍ରହ୍ମା**

# ଆଶୀର୍ବାଦ

## ବାଣପୁରର ପ୍ରଖ୍ୟାତ ତଥା ବର୍ଷୀୟାନ୍ କବିରାଜ ଶ୍ରୀ ରଘୁନାଥ ମହାପାତ୍ରଙ୍କର ଅଧ୍ୟାପକ ବ୍ରହ୍ମାଙ୍କୁ ଆଶୀର୍ବାଦ ।

ଶ୍ରୀମାନ୍ ଗୌରକୁମାର ! ତୁମର ଏହି "ନୂତନ ଜଗନ୍ନାଥାଷ୍ଟକମ୍" ପାଠକରି ମୁଁ ବିମୁଗ୍ଧ ଓ ବିସ୍ମିତ ହୋଇଗଲି । ୧୯୪୧ ଶ୍ରୀପଞ୍ଚମୀ ଦିନ ମୋର କନ୍ୟାକୁ, ସୁନାମଧନ୍ୟ କବି ଓ ନଅାଁଖୁଣ୍ଟାର ପ୍ରତିଷ୍ଠାତା-ସଂପାଦକ ୰ଗୋଦାବରୀଶ ମହାପାତ୍ର ତୁମକୁ ଜାମାତାରୂପେ ବରଣକରିବାବେଳେ, ମୁଁ ସେହି ଉତ୍ସବର ଜଣେ ମୁଖ୍ୟ ଆୟୋଜକ ଥିଲି । ବନ୍ଧୁତା ସୂତ୍ରରେ ତୁମର ପିତା, ପ୍ରଚଣ୍ଡ ପ୍ରତିଭାବନ୍ତ ୰ପଣ୍ଡିତ ଚନ୍ଦ୍ରଶେଖର ବ୍ରହ୍ମା, ଆମ ଗ୍ରାମ 'କୁମାରଙ୍ଗ'ରେ ଥରେ ପଦାର୍ପଣ କରି ଗୋଟିଏ ଭାଷଣ ଦେଇଥିଲେ । ମୋର ମନେଅଛି, ସେ କହିଥିଲେ— "ଜଗନ୍ନାଥସ୍ୱାମୀ ନୟନ ପଥଗାମୀ ଭବତୁ ମେ", ଏହି ପ୍ରସିଦ୍ଧ ଅଷ୍ଟକରେ ଜଗନ୍ନାଥ ଶବ୍ଦ ଅଛି, କିନ୍ତୁ ଯେଉଁ କାରଣରୁ ସେ ସମଗ୍ର ବିଶ୍ୱରେ ମହୀୟାନ୍, ସେ ସଂପର୍କରେ କିଛି ନାହିଁ ଏବଂ ଏହି ସ୍ତୋତ୍ରରେ ଏପରି ଅନେକ କଥା ଅଛି, ଯାହାକି ଅସଂଗତ ଓ ନିକୃଷ୍ଟ କବିତ୍ୱର ପରିଚାୟକ । ଅଥଚ, ଜଣେ ପରମ ଭକ୍ତ ଏହାକୁ ଲେଖିଥିବାରୁ, ଭକ୍ତପ୍ରିୟ ଜଗନ୍ନାଥ ଏହାକୁ ଆଦରରେ ଗ୍ରହଣ କରିଛନ୍ତି । ମୁଁ କହିବା ପ୍ରକାରେ ଗୋଟିଏ ନୂଆ ଅଷ୍ଟକ କେବଳ ସେହି ଲେଖକ ଲେଖିବ, ଯାହାକୁ ନିଜେ ଜଗନ୍ନାଥ ନିର୍ଦ୍ଦେଶ ଦେବେ ଓ ଶକ୍ତି ମଧ୍ୟ ଦେବେ । ସେ ସମୟ ଏପର୍ଯ୍ୟନ୍ତ ଆସିନାହିଁ ।"

ହେ କଲ୍ୟାଣୀୟ ଗୌରକୁମାର ! ଆଜି ତୁମର ଏହି "ନୂତନ-ଜଗନ୍ନାଥାଷ୍ଟକମ୍" ପଢ଼ିଲାପରେ ମୁଁ ଅନୁଭବ କଲି ଯେ, ତୁମ ପିତାଙ୍କର ସୂଚନା ଆଜି ତୁମଠାରେ ଜୀବନ୍ତରୂପେ ଫୁଟିଉଠିଛି । ୧୯୪୧ରୁ ଏପର୍ଯ୍ୟନ୍ତ

ତୁମେ ପ୍ରାଞ୍ଜଳ ଓ ପ୍ରଗଲ୍ଭ ବକ୍ତା, ବହୁଦର୍ଶୀ ପଣ୍ଡିତ, ସାହିତ୍ୟ ସମାଲୋଚକ, ଟୀକାକାର, ଅନୁବାଦକରୂପେ ତଥା ଅନୁପମ ସାହିତ୍ୟ ଅଧ୍ୟାପକରୂପେ ପରିଚିତ ଥିଲ । କିନ୍ତୁ ତୁମେ ସଂସ୍କୃତରେ ଏଭଳି ସରଳ, ତରଳ ଓ ରମ୍ୟାଳ କବିତା ଲେଖିବ ବୋଲି ଆମେ କେବେ କଳ୍ପନା ମଧ୍ୟ କରି ନ ଥିଲୁ । ଏବେ ନିଜେ କବି ହୋଇଗଲ ।

ମୋର ମନେ ପଡ଼ୁଛି, ତୁମ ପିତା ସେଦିନ ଭାବଗଦ୍‌ଗଦ ହୋଇ ତାଙ୍କର ସମ୍ବନ୍ଧୀ ୰ଗୋଦାବରୀଶ ମହାପାତ୍ରଙ୍କୁ କହିଥିଲେ— "ମୋର ଏ ପୁଅ ପାଇଁ ମୁଁ ଭାରତର ଅସଂଖ୍ୟ ଦେବୀମନ୍ଦିରରେ ଚଣ୍ଡୀପାଠ କରିଛି, ଅଗଣିତ ଶିବ ମନ୍ଦିରରେ ଅଭିଷେକ ମଧ୍ୟ କରିଛି । ହେଲେ ମୋ ଜୀବନରେ ମୋ ତପସ୍ୟାର ଫଳ ମୁଁ ଦେଖିପାରିବି ନାହିଁ । ଆପଣମାନେ ଦିନେ ଦେଖିବେ, ମୋ ପୁଅ ଗୌରୀକୁମାର ଆମ ଭଞ୍ଜଭୂମିର ଗୌରବ ରକ୍ଷାକରି ସଂସ୍କୃତରେ ଅସାଧାରଣ ଦକ୍ଷତା ପ୍ରଦର୍ଶନ କରିବ ଓ ଆମର ପଣ୍ଡିତ ବଂଶର ମଧ୍ୟ ଗୌରବ ରକ୍ଷା କରିବ" । ତୁମ ବାପାଙ୍କ କଥା ତୁମ ଜୀବନରେ ଏବେ ସତ ହୋଇଅଛି । ତୁମ ନିଜର ମାତୃଭାଷାପରି ସଂସ୍କୃତରେ ଭାଷଣ ଦେଇପାରୁଛ ଓ ଏବେ ୪/୫ବର୍ଷ ଭିତରେ ଅପୂର୍ବ ତଥା ପ୍ରଶଂସନୀୟ କବିତ୍ୱ ପ୍ରଦର୍ଶନ କରି, ତୁମର ବନ୍ଧୁବର୍ଗଙ୍କୁ, ଗୁଣଗ୍ରାହୀ ପଣ୍ଡିତ ଓ ପାଠକମାନଙ୍କୁ ମଧ୍ୟ ବିମଳ ଆନନ୍ଦରେ ପ୍ଳାବିତ କରିଦେଇଛ । ଆଜି ତୁମର ପିତା ଏବଂ ଶ୍ୱଶୁର ସ୍ୱର୍ଗରେ ଥାଇ ମଧ୍ୟ ତୁମର କୃତିତ୍ୱ ଦେଖି ତୁମକୁ ଆଶୀର୍ବାଦ କରୁଥିବେ ।

୧୯୪୧ରୁ, ଆଜି ୧୯୯୧ ପର୍ଯ୍ୟନ୍ତ ମୁଁ ତୁମ ପାଖେ ପାଖେ ରହିଅଛି, ତୁମର ଶିକ୍ଷକ ରୂପରେ, ଜଣେ ଶ୍ରୋତା ରୂପରେ ଏବଂ ତୁମର ନିରଳସ ସାଧନାର ପ୍ରତ୍ୟକ୍ଷଦର୍ଶୀ ରୂପରେ । ତୁମର ବୋଉ ତୁମକୁ, ତୁମର ପିଲାଦିନେ ପୃଥିବୀର ବାଇଶି ପାହାଚରେ ଗଡ଼ାଇ ଗଡ଼ାଇ, ତୁମକୁ ତାଙ୍କ ନିକଟରେ ସମର୍ପଣ କରିଦେଇଥିଲେ । ଆଜି ତୁମର ପଞ୍ଚାଶତ ବୟସରେ ତାହା ସାର୍ଥକ ହୋଇଛି ।

ମୁଁ ମୋର ଏହି ପ୍ରବୃଦ୍ଧ ବୟସରେ, ତୁମର ଜଣେ ଅଗ୍ରଜ ରୂପେ ତୁମକୁ ଆଶୀର୍ବାଦ କରି ତୁମର ଦୀର୍ଘ ଜୀବନ ଓ ବିଶ୍ୱସ୍ତରୀୟ ଖ୍ୟାତି କାମନା କରୁଅଛି । ଏଥି ସହିତ ଜଗନ୍ନାଥଙ୍କଠାରେ ପ୍ରାର୍ଥନା କରୁଅଛି ଯେ, ତୁମକୁ ତାଙ୍କ ପଦଧୂଳିଦେଇ, ସାଧନାକ୍ଷେତ୍ରରେ ତୁମକୁ ଚିରଜାଗ୍ରତ କରିରଖନ୍ତୁ । ଜଗନ୍ନାଥ ତତ୍ତ୍ୱପୂର୍ଣ୍ଣ, ଅତ୍ୟନ୍ତ ସରଳ ଏବଂ ଜଗନ୍ନାଥଙ୍କର ବିଭିନ୍ନ ବିଶେଷତ୍ୱ, ଗୌରବ ଓ ମହତ୍ତ୍ୱ ପରିପ୍ଳୁତ ତୁମର ଏହି "ନୂତନ-ଜଗନ୍ନାଥାଷ୍ଟକମ୍" ସମଗ୍ର ବିଶ୍ୱରେ ପରିଚିତ ଓ ପ୍ରଚାରିତ ହେଉ, ଜଗନ୍ନାଥଙ୍କ ଚରଣରେ ଏହାହିଁ ମୋର ପ୍ରାର୍ଥନା ।

କବିରାଜ ରଘୁନାଥ ମହାପାତ୍ର
କୁମାରୀଙ୍ଗ ଶାସନ,
ବାଣପୁର (ପୁରୀ)

# ନୂତନ-ଜଗନ୍ନାଥାଷ୍ଟକମ୍

## (୧)

ସୂଚନା—ଜଗନ୍ନାଥ ମହାପ୍ରଭୁ ସମଗ୍ର ହିନ୍ଦୁ ଜାତିର ସର୍ବଶ୍ରେଷ୍ଠ ଦେବତା କାହିଁକି, ତାର ଉତ୍ତର ।

**ଯୁଗେ ସତ୍ୟେ ନାରାୟଣ ଇତି ଯ ଈଶଃ ସୁବିଦିତଃ**
**ପୁନଃ ସ ତ୍ରେତାୟାଂ ରଘୁକୁଳ-ଶଶୀ, ଦ୍ୱାପର-ଯୁଗେ ।**
**ସ ଏବ ଶ୍ରୀକୃଷ୍ଣଃ, କଲୁଷ-ପରିପୂର୍ଣ୍ଣେ କଳିଯୁଗେ**
**ଜଗନ୍ନାଥେ ଭକ୍ତିଃ ପ୍ରସରତୁ ବିରକ୍ତିଃ କ୍ଷିତିସୁଖେ ॥ ୧ ॥**

**ସରଳାର୍ଥ** :—ଯେଉଁ ଈଶ (ଅର୍ଥାତ୍ ସର୍ବବ୍ୟାପକ ସର୍ବଶକ୍ତିମାନ୍ ଏବଂ ସର୍ବଜ୍ଞ) ଭଗବାନ୍, ସତ୍ୟଯୁଗରେ ନାରାୟଣରୂପେ ସୁବିଦିତ ଥିଲେ, ସେହି ପ୍ରଭୁ ପୁଣି ଥରେ ତ୍ରେତାଯୁଗରେ ରଘୁବଂଶର ଚନ୍ଦ୍ର ବା ସର୍ବଶ୍ରେଷ୍ଠ ପୁରୁଷରୂପେ ଜନ୍ମଲାଭ କରିଥିଲେ । (ତାଙ୍କର ନାମଥିଲା ରାମଚନ୍ଦ୍ର) । ତାପରେ ଯେତେବେଳେ ଦ୍ୱାପର ଯୁଗ ଆସିଲା, ସେହି ପ୍ରଭୁ ଭଗବାନ୍ ଶ୍ରୀକୃଷ୍ଣରୂପେ ପୁଣିଥରେ ନିଜକୁ ପ୍ରକାଶିତ କରିଥିଲେ । ଶେଷରେ ଆସିଲା କଳିଯୁଗ । (ବର୍ତ୍ତମାନ ସେହି ଯୁଗ ଚାଲିଛି) । କଳିଯୁଗଟି କଲୁଷ (ପାପ) ପରିପୂର୍ଣ୍ଣ ହୋଇରହିଛି । (ଏହି ଯୁଗରେ ଭଗବାନ୍ ଜଗନ୍ନାଥରୂପେ ନିଜକୁ ପ୍ରକଟିତ କରିଅଛନ୍ତି) । ତେଣୁ ମୁଁ ଚାହେଁ ଜଗନ୍ନାଥଙ୍କ ପ୍ରତି ମୋର ଭକ୍ତିଭାବ ଅଧିକରୁ ଅଧିକ ଭାବରେ ପ୍ରସାରିତ ହେଉ ଏବଂ ସଂସାର ସୁଖ ପ୍ରତି ମୋ ମନରେ ବିରକ୍ତି ଭାବ ଜାତ ହେଉ । (ଅଧିକ ଆଲୋଚନା ପାଇଁ ପରିଶିଷ୍ଟ ଦେଖନ୍ତୁ) ।

(୨)

ସୂଚନା—ଜଗନ୍ନାଥଙ୍କର ଆଦ୍ୟ ପ୍ରତିଷ୍ଠାତା କିଏ, ସେ ସମ୍ପର୍କରେ ।

**ପୁରୀ ନୀଳେ ଶୈଳେ ଘନ-ବନ-ମଧ୍ୟେ ସାଗରତଟେ**
**ମହାନ୍-ଇନ୍ଦ୍ରଦ୍ୟୁମ୍ନଃ ସୁରସଦନ-ନିର୍ମାଣମକରୋତ୍ ।**
**ରମା-ବାଣୀ-ଚଣ୍ଡୀ-ରବି-ଶିବ ଗଣେଶୈଃ ପରିବୃତେ**
**ଜଗନ୍ନାଥେ ଭକ୍ତୈଃ ପ୍ରସରତୁ ବିରକ୍ତୈଃ କ୍ଷିତିସୁଖେ ॥ ୨ ॥**

**ସରଳାର୍ଥ** :— ପୂର୍ବକାଳରେ (ଓଡ଼ିଶାର) ସାଗରକୂଳରେ ନୀଳଶୈଳ ନାମକ ଯେଉଁ ଶ୍ରେଷ୍ଠ ପାହାଡ଼ଟିଏ ଥିଆହୋଇଥିଲା, ତାହା ଉପରେ ଏବଂ ତାହାର ଚତୁଃପାର୍ଶ୍ୱ ଘଞ୍ଚ ବଣ ପରିପୂର୍ଣ୍ଣ ହୋଇ ରହିଥିଲା । ରାଜାଭାବରେ ଏବଂ ଭକ୍ତଭାବରେ ମହାନ୍ (ଖୁବ୍‌ବଡ଼) ଅଟନ୍ତି ଯେଉଁ (ଅବନ୍ତୀ ରାଜା) ଇନ୍ଦ୍ରଦ୍ୟୁମ୍ନ, (ନିଜ ଆରାଧ୍ୟ ପ୍ରଭୁ ଜଗନ୍ନାଥଙ୍କ ପାଇଁ) ସେ ସୁରସଦନ ଅର୍ଥାତ୍ ଦେବମନ୍ଦିର ନିର୍ମାଣ କରିଥିଲେ (ଏବଂ ସେ ମନ୍ଦିରରେ ଜଗନ୍ନାଥ ପ୍ରଭୃତି ଚତୁର୍ଦ୍ଧାମୂର୍ତ୍ତିଙ୍କୁ ସ୍ଥାପନ କରିଥିଲେ । ଆଜି ଯେଉଁ ଜଗନ୍ନାଥ ମନ୍ଦିର ଠିଆହୋଇଛି, ଏ ମନ୍ଦିର କିନ୍ତୁ ଇନ୍ଦ୍ରଦ୍ୟୁମ୍ନ ତୋଳିଥିବା ମନ୍ଦିର ନୁହେ । ଆଜକୁ ଆଠଶହ ବର୍ଷ ପୂର୍ବେ ରାଜା ଚୋଡ଼ଗଙ୍ଗଦେବ, ଇନ୍ଦ୍ରଦ୍ୟୁମ୍ନ ତୋଳିଥିବା ମନ୍ଦିରର ସ୍ଥାନରେ ଯେଉଁ ନୂତନ ମନ୍ଦିର ତୋଳିଥିଲେ, ସେ ମନ୍ଦିର ଏବେ ଠିଆହୋଇଛି । ଆଜିର ଜଗନ୍ନାଥ ମନ୍ଦିର ଚତୁଃପାର୍ଶ୍ୱ ଅନେକ ଦେବଦେବୀଙ୍କ ମନ୍ଦିର ଅଛି ଏବଂ ବିଭିନ୍ନ ସମୟରେ ଏସବୁ ମନ୍ଦିର ତୋଳାଯାଇଥିଲା) । ବର୍ତ୍ତମାନ ଜଗନ୍ନାଥ ତାଙ୍କ ବଡ଼ଦେଉଳ ଭିତରେ ବସିଥିଲେ ହେଁ, ଏସବୁ ପ୍ରସିଦ୍ଧ ଦେବଦେବୀଙ୍କ ଦ୍ୱାରା ବେଷ୍ଟିତ ହୋଇ ରହିଛନ୍ତି, ଯଥା :— (୧) ମହାଲକ୍ଷ୍ମୀ, (୨) ବାଣୀ (ଲକ୍ଷ୍ମୀଙ୍କ ଦେଉଳ ପାଖକୁ ଥିବା ସରସ୍ୱତୀଙ୍କ ମନ୍ଦିର), (୩) ଚଣ୍ଡୀ—ଅର୍ଥାତ୍ ବିମଳା, (୪) ରବି ବା ସୂର୍ଯ୍ୟ (ମହାଲକ୍ଷ୍ମୀଙ୍କ ମନ୍ଦିରର ଟିକିଏ ଆଗରେ ସୂର୍ଯ୍ୟ ମନ୍ଦିର ଠିଆହୋଇଛି), (୫) ଶିବ— (ଈଶାନେଶ୍ୱର ମନ୍ଦିର, କାଶୀବିଶ୍ୱନାଥ ମନ୍ଦିର ଇତ୍ୟାଦି), (୬) ଗଣେଶ—(ପ୍ରସିଦ୍ଧ କଳ୍ପବଟମୂଳେ ଏହାଙ୍କ ମନ୍ଦିର ଅଛି) । ଏସବୁ ଦେବଦେବୀଙ୍କ ମନ୍ଦିର ଯାହାଙ୍କ ଚତୁଃପାର୍ଶ୍ୱେ ରହିଅଛି, ସେହି

ଜଗନ୍ନାଥଙ୍କ ପ୍ରତି ମୋର ଭକ୍ତିଭାବ ବୃଦ୍ଧି ଲାଭ କରୁ ଏବଂ ଏ (ମାୟାମୟ) ସଂସାରର ସୁଖ ପ୍ରତି ମୋର ବିରକ୍ତିଭାବ ଜାତ ହେଉ ।

**ଜ୍ଞାତବ୍ୟ** (ଜାଣିବାର କଥା) —ପୁରୀ ବଡ଼ଦେଉଳ ବା ଜଗନ୍ନାଥ ମନ୍ଦିର ଚତୁଷ୍ପାର୍ଶ୍ୱ ଦୁଇଟି ବେଢ଼ା ଅଛି—ଭିତର ବେଢ଼ା (ବେଷ୍ଟନୀ) ଓ ବାହାର ବେଢ଼ା । ଏ ଦୁଇ ବେଢ଼ା ଭିତରେ ୫୦ରୁ ଅଧିକ ଦେଉଳ ବିଭିନ୍ନ ସମୟରେ ତୋଳାଯାଇଛି । ଏହି ଶ୍ଳୋକରେ କେବଳ ଛଅଟି ବିଶିଷ୍ଟ ମନ୍ଦିରର ନାମ ଉଲ୍ଲିଖିତ ହୋଇଅଛି । (ପରିଶିଷ୍ଟ ଦ୍ରଷ୍ଟବ୍ୟ)

(୩)

ସୂଚନା—ପୁରୀ ବଡ଼ ଦେଉଳରେ କଏ କଏ ପୂଜିତ, ସେ ସମ୍ପର୍କରେ ।

**ସଦା ପୀଠେ ଭ୍ରାତା ଧବଳ-ବଲଭଦ୍ରଶ୍ଚ ଭଗିନୀ**
**ସୁଭଦ୍ରା ସା ଭଦ୍ରା ପରିଣତ-ହରିଦ୍ରା-ରୁଚିମୟୀ ।**
**ସ-ଚକ୍ରଂ ଦେବେଶେ ନବ-ଜଲଧର-ଶ୍ୟାମ-ଲଳିତେ**
**ଜଗନ୍ନାଥେ ଭକ୍ତିଃ ପ୍ରସରତୁ ବିରକ୍ତିଃ କ୍ଷିତିସୁଖେ ॥ ୩ ।**

**ସରଳାର୍ଥ :—** ସବୁବେଳେ (ଜଗନ୍ନାଥଙ୍କ ପାଖେ ପାଖେ) ରତ୍ନବେଦୀ ନାମକ ପୀଠ ଉପରେ ବଳଭଦ୍ର ଏବଂ ସୁଭଦ୍ରା ରହିଛନ୍ତି । ବଡ଼ଭାଇ ବଳଭଦ୍ରଙ୍କ ବର୍ଣ୍ଣ ଧଳାବର୍ଣ୍ଣ । (କାରଣ, ସେ ହେଉଛନ୍ତି ମହାଦେବ ଶିବଙ୍କ ଅବତାର) । ଜଗନ୍ନାଥଙ୍କ ଭଉଣୀ ସୁଭଦ୍ରା ହେଉଛନ୍ତି ଭଦ୍ରା ଅର୍ଥାତ୍ ମଙ୍ଗଳମୟୀ । ତାଙ୍କର ଦେହର କାନ୍ତି ପାକଳ ହୋଇଥିବା ହଳଦୀର ରଙ୍ଗପରି ପୀତ । ତାଙ୍କ ଦେହର କାନ୍ତି ହଳଦିଆ ହୋଇଥିବାରୁ, ଦୁଇଭାଇଙ୍କ ମଝିରେ ରହି ସେ ବଡ଼ ସୁନ୍ଦର ଦେଖାଯାଉଛନ୍ତି । ରତ୍ନବେଦୀ ଉପରେ ଜଗନ୍ନାଥଙ୍କ ବାମପଟକୁ ଚକ୍ର ବା ସୁଦର୍ଶନ ଚକ୍ର ରହିଅଛନ୍ତି । ମୋର ଏହି କାମନା ଜାତ ହେଉଛି ଯେ, ରତ୍ନବେଦୀ ଉପରେ ନିଜର ଭାଇ ଭଉଣୀ ଏବଂ ସୁଦର୍ଶନ ଚକ୍ର ସହିତ ଯେଉଁ ଜଗନ୍ନାଥ ବସିଅଛନ୍ତି ଏବଂ ଯାହାଙ୍କ ଦେହର କାନ୍ତି ନୂଆ ମେଘ ପରି ଶ୍ୟାମଳ ବର୍ଣ୍ଣ ହୋଇଥିବାରୁ, ଦେଖିଲାବେଳେ ଆମର ଆଖି ବଳେ ବଳେ ତାଙ୍କ ପ୍ରତି ଟାଣିହୋଇ ରହେ, ସେହି ଜଗନ୍ନାଥଙ୍କଠାରେ ମୋର ଭକ୍ତି ବୃଦ୍ଧି ଲାଭ କରୁ ଏବଂ ଏହି ଅନିତ୍ୟ ସଂସାରର କ୍ଷଣିକ ସୁଖପ୍ରତି ମୋର ବିରକ୍ତିଜାତ ହେଉ (ଅଥବା ଆସକ୍ତି ଜାତ ନ ହେଉ) ।

(୪)

ସୂଚନା — ଚତୁର୍ଦ୍ଧା ମୂର୍ତ୍ତି ଓ ଚାରିଗୋଟି ବିଗ୍ରହ ସଂପର୍କରେ—

**ଚତୁର୍ଦ୍ଧା-ମୂର୍ତ୍ତିସ୍ତ୍ୱେ ନନୁ ନିଗମ-ସଂଖ୍ୟାଽନୁଗତୟା**
**ଚତୁରଙ୍ଗା-ଲିପ୍ତା ଭୁବନ-ଜନ-ଦେହାଂଶୁ-ବର୍ଦ୍ଧନା ।**
**ବ୍ରୟୀ-ରୂପେ, ଦାରୁ-ବିବିଧ-ବଲସଦ୍-ବିଗ୍ରହ-ଧରେ**
**ଜଗନ୍ନାଥେ ଭକ୍ତିଃ ପ୍ରସରତୁ ବିରକ୍ତିଃ କ୍ଷିତିସୁଖେ ॥ ୪ ॥**

**ସରଳାର୍ଥ :—** (ହେ ପ୍ରଭୁ ଜଗନ୍ନାଥ ! ) ରତ୍ନବେଦୀ ଉପରେ ତୁମେ ନିଜକୁ ଚାରିଗୋଟି ମୂର୍ତ୍ତିରେ ପ୍ରକାଶ କରିଅଛ । (ତେଣୁ ଭକ୍ତମାନେ 'ଚତୁର୍ଦ୍ଧାମୂର୍ତ୍ତି' ବୋଲି କହନ୍ତି) । ହିନ୍ଦୁଜାତିର ସର୍ବଶ୍ରେଷ୍ଠ ଧର୍ମଗ୍ରନ୍ଥ ବେଦମାନଙ୍କର ସଂଖ୍ୟା ଚାରି ହୋଇଥିବାରୁ, ସେହି ସଂଖ୍ୟାକୁ ଆଖିଆଗରେ ରଖି, ତୁମେ ନିଜକୁ ଚତୁର୍ଦ୍ଧା ମୂର୍ତ୍ତିରେ ବା ଚାରୋଟି ମୂର୍ତ୍ତିରେ ପ୍ରକାଶ କରିଅଛ । (ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନ, ଚାରିବେଦର ପ୍ରତୀକ । ଏହି ଚାରିମୂର୍ତ୍ତି ଅଲଗା ଅଲଗା ପରି ଜଣାଗଲେ ମଧ୍ୟ ବସ୍ତୁତଃ ସେମାନେ ଏକ । କାରଣ, ବେଦର ସେହି ପରଂବ୍ରହ୍ମ କଳିଯୁଗରେ ନିଜକୁ ଚାରି ରୂପରେ ପ୍ରକାଶ କରିଅଛନ୍ତି) । ଏହି ଚାରି ମୂର୍ତ୍ତିଙ୍କ ଦେହର ରଙ୍ଗ ହେଉଛି ଚାରି ପ୍ରକାର । ଜଗନ୍ନାଥ ହେଉଛନ୍ତି କଳା, ବଳଭଦ୍ର ହେଉଛନ୍ତି ଧଳା, ସୁଭଦ୍ରା ହେଉଛନ୍ତି ହଳଦିଆ ଏବଂ ସୁଦର୍ଶନ ହେଉଛନ୍ତି ନାଲିଆ ରଙ୍ଗରେ ରଂଜିତ । ଆମର ଏହି ଯେଉଁ ଭୁବନ ବା ପୃଥିବୀ ରହିଅଛି, ତହିଁରେ ଥିବା ବିଭିନ୍ନ ଦେଶରେ ଯେଉଁସବୁ ମନୁଷ୍ୟ ଅଛନ୍ତି, ସେମାନଙ୍କ ଦେହର ଅଂଶୁ ବା ରଙ୍ଗ ଅର୍ଥାତ୍ କାନ୍ତି ଯାହା, ସେହି ଅନୁସାରେ ଚାରିମୂର୍ତ୍ତିଙ୍କୁ ଚାରି ରଙ୍ଗରେ ରଂଜିତ କରିଯାଇଛି । (ଅନ୍ୟ ଭାବରେ କହିଲେ, ସମଗ୍ର ମାନବ ଜାତିରେ ଯେଉଁ ଚାରି ରଙ୍ଗର (ଅଂଶୁର) ମନୁଷ୍ୟ ଅଛନ୍ତି, ଆମ ଜଗନ୍ନାଥ ହେଉଛନ୍ତି ସେ ସମସ୍ତଙ୍କର ଉପାସ୍ୟ ଦେବତା । ଏଭଳି ବିଶାଳ ପରିକଳ୍ପନା ଏବଂ ମାନବବାଦୀ-ଚିନ୍ତାଧାରା, ପୃଥିବୀର ମୂର୍ତ୍ତିପୂଜକ ଅନ୍ୟ କୌଣସି ଜାତି ବା ଦେଶରେ ନାହିଁ) ।

ବେଦମାନଙ୍କର ସଂଖ୍ୟା ଯଦିଓ ଚାରି, ତଥାପି ପଣ୍ଡିତମାନେ ବେଦ ଅର୍ଥରେ "ତ୍ରୟୀ" ଶବ୍ଦ ପ୍ରୟୋଗ କରିଥାଆନ୍ତି । ତ୍ରୟୀ ଶବ୍ଦ ଏକାଠିଥିବା ତିନୋଟି ପଦାର୍ଥକୁ ବୁଝାଇଥାଏ । ଜଗନ୍ନାଥ ଯଦିଓ ଚତୁର୍ଦ୍ଧା ମୂର୍ତ୍ତିରେ ପ୍ରକଟିତ ହୋଇଛନ୍ତି, ତଥାପି ତାଙ୍କର ତିନୋଟି ମୂର୍ତ୍ତି ସୁପ୍ରସିଦ୍ଧ । (ସେଥିପାଇଁ, ରଥଯାତ୍ରାବେଳେ ତିନୋଟି ରଥ କରାଯାଇଥାଏ) । ଏ ଦୃଷ୍ଟିରୁ ସେ ହେଉଛନ୍ତି ତ୍ରୟୀ-ସ୍ୱରୂପ । ଦାରୁ ବା କାଠରେ, ତ୍ରିବିଧ ବା ତିନି ପ୍ରକାର (ତିନିଗୋଟି) ବିଳସତ୍ ଅର୍ଥାତ୍ ସୁନ୍ଦର ଦେଖାଯାଉଥିବା, ବିଗ୍ରହ ଅର୍ଥାତ୍ ମୂର୍ତ୍ତିମାନଙ୍କୁ ସେ ଧାରଣ କରିଛନ୍ତି । (ତତ୍ତ୍ୱ ଦୃଷ୍ଟିରୁ, ଦାରୁବ୍ରହ୍ମ ଜଗନ୍ନାଥ ଏକ ହେଲେ ମଧ୍ୟ, ତିନିଗୋଟି କାଠ ମୂର୍ତ୍ତିରେ ସେ ନିଜକୁ ପ୍ରକାଶ କରିଅଛନ୍ତି) । ଏଭଳି ଯେଉଁ ଜଗନ୍ନାଥ, ତାଙ୍କ ପ୍ରତି ମୋର ଭକ୍ତିଭାବ ଅଧିକରୁ ଅଧିକ ବୃଦ୍ଧିଲାଭ କରୁ ଏବଂ ଏ (ମାୟାମୟ) ସଂସାରର (କ୍ଷଣିକ ଇନ୍ଦ୍ରିୟ) ସୁଖପ୍ରତି ମୋ ମନରେ ବିରକ୍ତିଜାତ ହେଉ । (ଅଧିକ ତଥ୍ୟ ପାଇଁ ପରିଶିଷ୍ଟ ଦେଖନ୍ତୁ) ।

**ଜ୍ଞାତବ୍ୟ :—** କବି ସମ୍ରାଟ୍ ଉପେନ୍ଦ୍ର ଭଞ୍ଜ, ମହାରାଜା ଦଶରଥଙ୍କ ଚାରିପୁଅଙ୍କୁ (ରାମଚନ୍ଦ୍ର ପ୍ରଭୃତିଙ୍କୁ) ଚାରି ରଙ୍ଗର ଚାରିଗୋଟି ବ୍ରହ୍ମରୂପେ ବର୍ଣ୍ଣନା କରିଛନ୍ତି—ଦ୍ରଷ୍ଟବ୍ୟ :— 'ବୈଦେହୀଶ ବିଳାସ'— ୫ମ ଛାନ୍ଦର ୫୪ ପଦ । ବେଦ ୪ ଗୋଟି ବୋଲି ବୃହଦାରଣ୍ୟକ—ଉପନିଷଦ୍‌ରେ ଲେଖାଅଛି (୨-୪-୧୦) କିନ୍ତୁ ତୈତ୍ତିରୀୟ ବ୍ରାହ୍ମଣରେ 'ତିନୋଟି' ବୋଲି ଲେଖାଅଛି ।

(୫)

ସୂଚନା—ଜଗନ୍ନାଥଙ୍କର କେତେକ ଅସାଧାରଣ ବିଶେଷତ୍ୱ—

**ପ୍ରସାଦେ ପ୍ରାସାଦେ ବପୁଷି ବିଭୁବେ ଶେଷୁ ଚ ମତେ**
**ରଥାଦୌ ପୂଜାୟାଂ ତବ ସୁରପରତ୍ୱଂ ହି ନିହିତମ୍ ।**
**ନ ବୈ ପାଣୀ ପାଦୌ ତଦପି ଚଳନାଦୌ ସୁନିପୁଣେ**
**ଜଗନ୍ନାଥେ ଭକ୍ତୈଃ ପ୍ରସରତୁ ବିରକ୍ତୈଃ କ୍ଷିତିସୁଖେ ॥ ୫ ॥**

**ସରଳାର୍ଥ:—** ହେ ପ୍ରଭୁ ଜଗନ୍ନାଥ ! ସମଗ୍ର ହିନ୍ଦୁ ଭାରତରେ ତୁମର ଅସାଧାରଣ ବିଶେଷତ୍ୱ କେଉଁ କେଉଁ ବିଷୟରେ ପ୍ରତିଫଳିତ ହୋଇଅଛି, ସେ କଥା ଯଦି କେହି ପ୍ରଶ୍ନ କରେ, ତାହାର ଉତ୍ତର ହେବ— ନିମ୍ନଲିଖିତ ବିଷୟରେ ତୁମର ବିଶିଷ୍ଟତା ଫୁଟିଉଠିଛି, ଯଥା—

(୧) ବିଭିନ୍ନ ଦୃଷ୍ଟିରୁ ତୁମ ପ୍ରସାଦ ଅର୍ଥାତ୍ 'ମହାପ୍ରସାଦ' । ହିନ୍ଦୁ ଜଗତରେ ଅନ୍ୟ କେଉଁଠାରେ ଏଭଳି ପ୍ରସାଦ ନାହିଁ ଏବଂ ପରିମାଣ ଦୃଷ୍ଟିରୁ, ସମଗ୍ର ପୃଥିବୀରେ ଅନ୍ୟ କେଉଁଠାରେ ଏହାର ତୁଳନା ନାହିଁ ।

(୨) ତୁମର ପ୍ରାସାଦ ବା ବଡ଼ଦେଉଳ ଭଳି କଳାତ୍ମକ ସମନ୍ୱୟପୂର୍ଣ୍ଣ ମହାମନ୍ଦିର ସମଗ୍ର ଭାରତରେ ଆଉ କେଉଁଠାରେ ନାହିଁ ।

(୩) ତୁମ ମୂର୍ତ୍ତିରେ ବା ଦେହରେ ନବଗ୍ରହ, ଦଶଅବତାର ପ୍ରଭୃତିର ଯେଭଳି ସମନ୍ୱୟ ଘଟିଅଛି, ସମଗ୍ର ଭାରତରେ ସେଭଳି ବିଚିତ୍ର ଦେବମୂର୍ତ୍ତି ଅନ୍ୟ କେଉଁଠାରେ ନାହିଁ ।

(୪) ବର୍ଷ ତମାମ୍ ବହୁ ଦେବତାଙ୍କର ବେଶରେ ତୁମେ ଭୂଷିତହୋଇ, ଭକ୍ତମାନଙ୍କୁ ଏକଥା ଜଣାଇଦେଇଥାଅ ଯେ, ଅଖିଳରେ ତୁମେ ହିଁ ସେ ସବୁ ଦେବତାରୂପେ ନିଜକୁ ପ୍ରକାଶ କରିଥିଲ । ମନ୍ଦିରର ବିଧିବିଧାନରେ ଏଭଳି ବିରାଟ ପରିକଳ୍ପନା ସମଗ୍ର ଭାରତରେ ଅନ୍ୟ କେଉଁଠି ଦେଖାଯାଏ ନାହିଁ ।

(୫) ତୁମର ମତରେ ଅର୍ଥାତ୍ ଧର୍ମ ମତରେ ଯେପରି କି ଅଦ୍ୱୈତବାଦ, ଦ୍ୱୈତବାଦ, ଅଚିନ୍ତ୍ୟ-ଭେଦାଭେଦବାଦ ପ୍ରଭୃତି ମତବାଦ ମନ୍ଦିରର ବିଧି-ବିଧାନ ମଧ୍ୟରେ ପ୍ରକାଶ ପାଇଛି, ସମଗ୍ର ଭାରତରେ ତାର ପଟାନ୍ତର ନାହିଁ ।

(୬) ରଥଯାତ୍ରାରେ ଏବଂ ଅନ୍ୟାନ୍ୟ ଯାତ୍ରାରେ ଜଳ, ସ୍ଥଳ ଏବଂ ଆକାଶର ପ୍ରଭୁରୂପେ, ତୁମର ଯେଉଁ ବିଶେଷତ୍ୱ ପ୍ରକାଶ ପାଉଛି (ଏବଂ ରଥର ଚକ ସଂଖ୍ୟାରେ ତଥା ବର୍ଷକୁ ଥରେ ନିଜ ଜନ୍ମ ସ୍ଥାନକୁ ଯିବାରେ ଏବଂ ଛେରାପହଁରାରେ ତୁମର ଯେଉଁ ବିଶେଷତ୍ୱ ପ୍ରକାଶ ପାଉଛି) ସମଗ୍ର ଭାରତରେ ତାହା ଆଉ କେଉଁଠାରେ ଦେଖିବାକୁ ମିଳେ ନାହିଁ ।

(୭) ତୁମ ମନ୍ଦିରରେ କେବଳ ବୈଦିକ ବା କେବଳ ତାନ୍ତ୍ରିକ ବା କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ପୂଜା-ପଦ୍ଧତି ପ୍ରଚଳିତ ନ ହୋଇ, ଏକାଧାରରେ ତ୍ରିବିଧ ପ୍ରକାର ପୂଜାପଦ୍ଧତି ପ୍ରଚଳିତ ହେବାଦ୍ୱାରା ତୁମର ସମନ୍ୱୟବାଦୀ ଆଦର୍ଶ ଯେପରି ଫୁଟିଉଠିଛି, ସମଗ୍ର ଭାରତରେ ତାହାର ପଟାନ୍ତର ନାହିଁ । ଅତଏବ ଏ ସାତୋଟି ଦିଗରୁ ଦେଖିଲେ, ସମଗ୍ର ଭାରତବର୍ଷରେ ତୁମ ଭଳି ଦେବତା ଆଉ କେଉଁଠାରେ ଦେଖିବାକୁ ମିଳନ୍ତି ନାହିଁ । ଏଭଳି ବିବିଧ ବିଶେଷତ୍ୱ-ମଣ୍ଡିତ ଯେଉଁ ଜଗନ୍ନାଥ, ତାଙ୍କଠାରେ ମୋର ଭକ୍ତିଭାବ ବୃଦ୍ଧିଲାଭ କରୁ (ଅସାର) ସଂସାରର (ଅନିତ୍ୟ) ସୁଖପ୍ରତି ମୋର ମନରେ ବିରକ୍ତିଭାବ ଜାତ ହେଉ । (ପରିଶିଷ୍ଟ ଦେଖନ୍ତୁ) ।

(୭)

ସୂଚନା—ଜଗନ୍ନାଥଙ୍କର ଅନ୍ୟ କେତେକ ବୈଶିଷ୍ଟ୍ୟ—

**ତ୍ୱମୀଶଃ କାଳୀ ତ୍ୱଂ ତ୍ୱମପି ଗଣନାଥଶ୍ଚ ସବିତା**
**ଶରୀରଂ କାଷ୍ଠଂ ତେ ନବତନୁବିଧାନଂ କଥମହୋ !**
**ବିଚିତ୍ରଂ ତତ୍ ସର୍ବଂ, କୁସୁମ-ମଧୁ-ଗୀତାଦିରସିକେ**
**ଜଗନ୍ନାଥେ ଭକ୍ତିଃ ପ୍ରସରତୁ ବିରକ୍ତିଃ କ୍ଷିତିସୁଖେ ॥ ୭ ॥**

**ସରଳାର୍ଥ :**— (ହେ ପ୍ରଭୁ ତୁମେ ଯଦିଓ ସର୍ବସାଧାରଣରେ "ବିଷ୍ଣୁ-ପୁରୁଷୋତ୍ତମ"ରୂପେ ପରିଚିତ, ତଥାପି) ତୁମେ ହେଉଛ ଶିବ ବା ରୁଦ୍ର, ତୁମେ ହେଉଛ କାଳୀ ବା ଦକ୍ଷିଣ କାଳିକା, ତୁମେ ହେଉଛ ଗଣେଶ ଓ ତୁମେ ହେଉଛ ସୂର୍ଯ୍ୟ । (ଏଭଳି ବିଚିତ୍ରତା ଅନ୍ୟ ଦେବଦେବୀଙ୍କଠାରେ ଦେଖାଯାଉ ନ ଥିବାରୁ, ଭାରତବର୍ଷରେ ତୁମେ ଅସାଧାରଣ ଦେବତା) । ତୁମ ଦେହ କାଠରେ ତିଆରି ହୋଇଛି । ଅଥଚ, ତୁମର ନବକଳେବର ବିଧି ପାଳନ କରାଯାଉଛି । (ଶୁଖିଲା କାଠ ହେଉଛି ଯାହାଙ୍କର ଦେହ, ତାଙ୍କର ନବକଳେବର ବିଧି କିପରି ଅବା ପାଳିତ ହେଉଛି ? ଏଭଳି ବିଚିତ୍ର କଥା ଭାରତର କୌଣସି ଦେବତାଙ୍କଠାରେ ଦେଖାଯାଏ ନାହିଁ) । ଯେଉଁ ଦେବତା ବିଭିନ୍ନ ପ୍ରକାରର ଫୁଲ (ତିଆରି ମାଳା) ଏବଂ ମଧୁର ଗୀତ ପ୍ରଭୃତି ଅର୍ଥାତ୍ ଜୟଦେବଙ୍କ ମଧୁର ପଦାବଳୀରେ ବିରଚିତ ଗୀତ ବା ଗୀତଗୋବିନ୍ଦକୁ ଭଲ ପାଆନ୍ତି ଏବଂ ମାହାରୀ ନାଚକୁ ଭଲ ପାଆନ୍ତି, ସେହି ଜଗନ୍ନାଥଙ୍କଠାରେ ମୋର ଭକ୍ତିଭାବ ବୃଦ୍ଧିଲାଭକରୁ ଏବଂ ସାଂସାରିକ ସୁଖପ୍ରତି ମୋ ମନରେ ବିରକ୍ତିଭାବ ଜାତ ହେଉ (ପରିଶିଷ୍ଟ ଦେଖନ୍ତୁ) ।

(୭)

ସୂଚନା—ଜଗନ୍ନାଥଙ୍କୁ ଭକ୍ତର ନିବେଦନ —

**ଧର୍ମ-ଧ୍ୱସ୍ତେ ଲୋକାଃ ବିଗତ-ଶୁଚିଭାବା ହତଧିୟଃ-**
**ବିଲୁପ୍ତା ସଚ୍ଚିନ୍ତା, ହୃଦୟ-ସରସୀ ଶୂନ୍ୟ-ସଲିଲା ।**
**ମମାତ୍ୟନ୍ତଂ କାମ୍ୟଂ ତ୍ରିଗୁଣଯୁତ-ସଚ୍ଚକ୍ରନୟନେ**
**ଜଗନ୍ନାଥେ ଭକ୍ତିଃ ପ୍ରସରତୁ ବିରକ୍ତିଃ କ୍ଷିତିସୁଖେ ।। ୭ ।।**

**ସରଳାର୍ଥ :**— ହେ ପ୍ରଭୁ ! ଆଜି କଳିଯୁଗରେ ପୃଥିବୀର ଲୋକ-ମାନଙ୍କ ମନରୁ ପବିତ୍ରଭାବ ଏବଂ ହିତାହିତ ଜ୍ଞାନ ଦୂର ହୋଇଯାଇଛି । ଲୋକମାନଙ୍କର ସତ୍-ଚିନ୍ତା ଲୋପ ହୋଇଯାଇଛି । ସେମାନଙ୍କ ହୃଦୟରୂପକ ଜଳାଶୟ ଏବେ ଜଳଶୂନ୍ୟ ହୋଇଯାଇଛି । (ଅର୍ଥାତ୍ ହୃଦୟରେ ମାନବ ସୁଲଭ ସଦ୍‌ଗୁଣ ଆଜି ନାହିଁ) । ମୋର ପ୍ରବଳ ଭାବରେ ଇଚ୍ଛା ହେଉଛି ଯେ, ସତ୍ତ୍ୱଗୁଣ, ରଜୋଗୁଣ ଏବଂ ତମୋଗୁଣ, ଏହି ତିନିଗୁଣ ଯୁକ୍ତ ହୋଇଥିବା ସୁନ୍ଦର ଚକାଆଖି ଯାହାଙ୍କର ଅଛି, ସେହି ଜଗନ୍ନାଥଙ୍କଠାରେ ମୋର ଭକ୍ତିଭାବ ବୃଦ୍ଧିଲାଭକରୁ ଏବଂ ସାଂସାରିକ ସୁଖପ୍ରତି ମୋ ମନରେ ବିରକ୍ତିଭାବ ଜାତ ହେଉ । (ପରିଶିଷ୍ଟ ଦେଖନ୍ତୁ) ।

**ଜ୍ଞାତବ୍ୟ :**— ଜଗନ୍ନାଥଙ୍କ ଆଖିରେ ଥିବା ତିନି ଗୋଟି ରଙ୍ଗରୁ ସୂଚନା ମିଳୁଅଛି ଯେ, ସେ ହେଉଛନ୍ତି ସୃଷ୍ଟିକର୍ତ୍ତା ବ୍ରହ୍ମା, ସୃଷ୍ଟି ପାଳକ ବିଷ୍ଣୁ ଏବଂ ସଂହାରକାରୀ ରୁଦ୍ର ।

(୮)

ସୂଚନା—ଜଗନ୍ନାଥଙ୍କ ଶ୍ରୀଚରଣେ ଭକ୍ତର ପ୍ରାର୍ଥନା—

**ହରତ୍ୱଂ ଲୋକାନାଂ କଲିମଲିନ-ଭାବଂ ମୁରରିପୋ !**
**କୃପାପୂର୍ଣ୍ଣାଂ ଦୃଷ୍ଟିଂ ବିତର ମୟି ସଦ୍‌ଭାବ-କଲିତାମ୍ ।**
**ଅଶକ୍ତୋଽହଂ ନୂନଂ ପତିତ-ଜନନାଥେ ଗୁଣନିଧୌ-**
**ଜଗନ୍ନାଥେ ଭକ୍ତିଃ ପ୍ରସରତୁ ବିରକ୍ତିଃ କ୍ଷିତିସୁଖେ ॥ ୮ ॥**

**ସରଳାର୍ଥ :—** (ହେ ପ୍ରଭୁ ଜଗନ୍ନାଥ !) ଆଜି କଳିଯୁଗର ପ୍ରଭାବରୁ ଲୋକମାନଙ୍କ ମନରେ ଯେଉଁ ସବୁ ମଳିନ ଭାବ ଜାତ ହେଉଛି, ତୁମେ ତାକୁ ଦୂରକରିଦିଅ । ତୁମେ ହେଉଛ ମୁର ନାମକ ଅସୁରର ରିପୁ ବା ଶତ୍ରୁ । (ହେ ମୁରରିପୁ ବା ମୁର ନାମକ ରାକ୍ଷସର ଶତ୍ରୁ ! ତୁମେ ଦାନବମାନଙ୍କର ଶତ୍ରୁଥିବାରୁ, କଳିଯୁଗରେ ମାନବ ମନରେ ଯେଉଁ ଦାନବଭାବ ଜାତହେଉଛି, ତାକୁ ବିନାଶ କରିଦିଅ) । ମୋ ଉପରେ ତୁମେ ତୁମର ଏଭଳି କୃପାଦୃଷ୍ଟି ସଞ୍ଚାଳିତ କର, ଯହିଁରେ ସଦ୍‌ଭାବ ବା ଲୋକ ଲୋକ ମଧ୍ୟରେ ବନ୍ଧୁତ୍ୱର ସରସତା ହିଁ ରହିଥିବ । ମୁଁ ଜାଣୁଛି, ନିଶ୍ଚିତ ଭାବରେ ମୁଁ ଜଣେ ଶକ୍ତିହୀନ ଲୋକ (ଅର୍ଥାତ୍ ନିଜ ବଳରେ ନିଜେ କିଛି କରିପାରିବି ନାହିଁ । ତେଣୁ) ମୁଁ ଚାହୁଁଛି, ପତିତଜନମାନଙ୍କର ଉଦ୍ଧାରକାରୀ ଏବଂ ସମସ୍ତ ସଦ୍‌ଗୁଣର ସାଗର ସ୍ୱରୂପ ଅଟନ୍ତି ଯେଉଁ ଜଗନ୍ନାଥ, ତାଙ୍କଠାରେ ମୋର ଭକ୍ତିଭାବ ଅଧିକରୁ ଅଧିକ ହେଉ ଏବଂ ଏହି ଅନିତ୍ୟ ସଂସାରର ସୁଖଭୋଗ ପାଇଁ ମୋ ମନରେ ଆସକ୍ତି ଜାତ ନ ହେଉ ।

**ଜ୍ଞାତବ୍ୟ :—** 'ପତିତଜନନାଥ' କହିବାର ଲକ୍ଷ୍ୟ ହେଉଛି, "ମୁଁ ପାପୀ ବା ପତିତ ଓ ତୁମେ, ପତିତର ଉଦ୍ଧାରକାରୀ" । 'ସେହିପରି, "ତୁମେ ସକଳ ସଦ୍‌ଗୁଣର ସାଗର ଅଟ ମୁଁ ଗୁଣଶୂନ୍ୟ, ତେଣୁ, ମତେ ଗୁଣଯୁକ୍ତ କର" ।

# ପରିଶିଷ୍ଟ

## ପ୍ରଥମ ଶ୍ଳୋକ ସଂପର୍କରେ :—

କଳ୍ପ, ମନ୍ୱନ୍ତର, ମହାଯୁଗ, ଯୁଗ—ଏଭଳି ଭାବରେ ଅନନ୍ତକାଳର ବିଭାଗ କରାଯାଇଛି । ଚାରି ଯୁଗରେ ଗୋଟିଏ 'ମହାଯୁଗ' ହୁଏ । ଚାରିଗୋଟି ଯୁଗ ହେଲା— (୧) ସତ୍ୟଯୁଗ, (୨) ତ୍ରେତାଯୁଗ, (୩) ଦ୍ୱାପରଯୁଗ ଏବଂ (୪) କଳିଯୁଗ । ସତ୍ୟଯୁଗରୁ କଳିଯୁଗ ପର୍ଯ୍ୟନ୍ତ ଧର୍ମର ଚରଣ କମି କମି ଆସିଛି ।

ସତ୍ୟଯୁଗରେ ଭଗବାନ୍ ନାରାୟଣରୂପେ ସୁବଦିତ ଥିଲେ । ସେ ଥିଲେ ପରମ ପୁରୁଷ । କିନ୍ତୁ ଦ୍ୱାପରଯୁଗରେ ଧର୍ମ ଓ ସତ୍ୟର ପରିମାଣ କମିଗଲା । ଦୁଷ୍ଟ ଓ ଅତ୍ୟାଚାରୀ ଲୋକଙ୍କ ଦ୍ୱାରା ପୃଥିବୀ ପୀଡ଼ିତ ହେଲା । ଲୋକଙ୍କୁ ରକ୍ଷା କରିବାପାଇଁ ସର୍ବବ୍ୟାପକ ପରମପୁରୁଷ ଭଗବାନ୍ ଅଯୋଧ୍ୟାର ରାଜବଂଶରେ ଜନ୍ମହୋଇଥିଲେ । ସତ୍ୟଯୁଗର 'ପରମ-ପୁରୁଷ' ତ୍ରେତାଯୁଗରେ 'ମର୍ଯ୍ୟାଦା ପୁରୁଷୋତ୍ତମ' ରୂପେ ପରିଚିତ ହେଲେ । ତାଙ୍କର ନାମ ରାମଚନ୍ଦ୍ର ।

ତାପରେ ଆସିଲା ଦ୍ୱାପରଯୁଗ । ପୃଥିବୀରେ ଧର୍ମର ପରିମାଣ ଆହୁରି କମିଗଲା । ତେଣୁ ସେହି ପରମପୁରୁଷ ମଥୁରାର ବନ୍ଦୀଶାଳାରେ ଜନ୍ମଗ୍ରହଣ କଲେ । ତାଙ୍କର ନାମ ହେଲା ଶ୍ରୀକୃଷ୍ଣ । ତାଙ୍କର କାର୍ଯ୍ୟକଳାପ ଦେଖି ପଣ୍ଡିତମାନେ ତାଙ୍କୁ ନାମ ଦେଲେ 'ଲୀଳା-ପୁରୁଷୋତ୍ତମ' । ଦୁଷ୍ଟମାନଙ୍କୁ ସଂହାର କରି ସେ ପୁଣି ଥରେ ଧର୍ମ ସଂସ୍ଥାପନ କରିଗଲେ ।

ଶେଷରେ ଆସିଲା କଳିଯୁଗ । ଏହି ଯୁଗରେ ଧର୍ମର ପରିମାଣ ଆହୁରି କମିଗଲା । ଗୋଟିଏ ଧର୍ମ ପରିବାରକୁ ତିନୋଟି ଦୁଷ୍ଟ ଓ ଦୁର୍ଦ୍ଦାନ୍ତ ପରିବାର ଆକ୍ରମଣ କଲାପରି, କଳିଯୁଗର ଏକପାଦ ଧର୍ମ, ତିନିପାଦ ଅଧର୍ମର ଚାପରେ ଦୁର୍ବଳ ହୋଇଗଲା । ଏ ଯୁଗରେ ଅଧର୍ମର ପ୍ରଭାବ ହେତୁ ଲୋକଙ୍କର ଖାଦ୍ୟପେୟ, ବେଶଭୂଷା, ଆଚାର-ବ୍ୟବହାର, ଧନସମ୍ପଦର

ମୋହ, ଇନ୍ଦ୍ରିୟଲାଳସା ଓ ସ୍ୱାର୍ଥପରତା ଅତ୍ୟଧିକ ବଢ଼ିଗଲା । ଲୋକମାନେ ପତିତ ହୋଇଗଲେ । ତେଣୁ ପରମପୁରୁଷ ଭଗବାନ୍ କଳିଯୁଗରେ ଦାରୁବ୍ରହ୍ମ ଜଗନ୍ନାଥ ରୂପରେ ଆବିର୍ଭୂତ ହେଲେ । ଧର୍ମଛଡ଼ା ହୋଇ ଓଡ଼ିଶାଅଧିକେ ସମସ୍ତେ ପତିତ ହୋଇଯିବାରୁ, ସେମାନଙ୍କୁ ଉଦ୍ଧାର କରିବା ପାଇଁ ଭଗବାନ୍ ଜଗନ୍ନାଥ ପତିତପାବନ ନାମରେ ପରିଚିତ ହେଲେ । ଧର୍ମପ୍ରାଣ ଜନସାଧାରଣ କହିଲେ, ସେ ହେଉଛନ୍ତି 'ପତିତପାବନ' । ତେଣୁ ଆମ ଓଡ଼ିଶାର ଜଗନ୍ନାଥ ହେଉଛନ୍ତି କଳିଯୁଗର ସର୍ବଶ୍ରେଷ୍ଠ ଦେବତା । ପ୍ରତ୍ୟେକ ମାନବବାଦୀ, ଈଶ୍ୱରବିଶ୍ୱାସୀ ଏବଂ କଳିଯୁଗର ପାପ ତାପ ପୀଡ଼ିତ ଲୋକମାନଙ୍କ ପକ୍ଷରେ ଜଗନ୍ନାଥ ହେଉଛନ୍ତି ସର୍ବଶ୍ରେଷ୍ଠ ଦେବତା । 'ପୁରୁଷୋତ୍ତମ'ରୂପେ ମଧ୍ୟ ସେ ସୁବନ୍ଦିତ ହୋଇଛନ୍ତି ।

## ଦ୍ୱିତୀୟ ଶ୍ଳୋକ ସଂପର୍କରେ :—

ବର୍ତ୍ତମାନ ପୁରୀର ଜଗନ୍ନାଥ ମନ୍ଦିର ଦେଖିବା ପାଇଁ ଲକ୍ଷ ଲକ୍ଷ ଲୋକ ଯାଉଛନ୍ତି । ସେମାନେ ଦେଖୁଛନ୍ତି ଯେ, ଜଗନ୍ନାଥଙ୍କ ମନ୍ଦିର ଗୃହପୃଷ୍ଠର ଦାଣ୍ଡଠାରୁ ପ୍ରାୟ କୋଡ଼ିଏ ଫୁଟ ଉଚ୍ଚରେ ଠିଆହୋଇଛି । ଆଗେ ସେଠାରେ ଗୋଟିଏ ଛୋଟିଆ ପାହାଡ଼ ଥିଲା । ସେ ପାହାଡ଼ର ନାଆଁ ଥିଲା ନୀଳଶୈଳ । ତାହାର ନାମ କାହିଁକି ନୀଳଶୈଳ ହେଲା, ସେ ସମ୍ପର୍କରେ ବିଭିନ୍ନ ମତ ପ୍ରକାଶ ପାଇଛି । ପ୍ରଥମ ମତ ହେଲା, ନୀଳରଙ୍ଗର ଗଛପତ୍ର ତା'ର ଉପରେ ଉଠିଥିବାରୁ, ଦୂରରୁ ପାହାଡ଼ଟି ନେଳିଆ ଦେଖାଯାଉଥିଲା । ଦ୍ୱିତୀୟରେ, ସେ ପାହାଡ଼ ଉପରେ ନୀଳା ନାମକ ରତ୍ନଖଣ୍ଡମାନ ବିଞ୍ଛି ହୋଇ ପଡ଼ିଥିଲା, ଏବେ ଗତ ଦଶବର୍ଷ ଭିତରେ କଳାହାଣ୍ଡି ଜିଲାର ଜଙ୍ଗଲରେ ମୂଲ୍ୟବାନ୍ ରତ୍ନଖଣ୍ଡମାନ ଖୋଳାରେ ପଡ଼ିରହିଥିବାର ଯେପରି ଦେଖାଯାଇଛି ଓ ସମ୍ବାଦ ବାହାରିଛି । ତୃତୀୟରେ, ଜଗନ୍ନାଥଙ୍କ ମୂର୍ତ୍ତି ତିଆରି ହେବା ଆଗରୁ, ସେହି ପାହାଡ଼ର ଗୋଟିଏ ଗୁମ୍ଫାରେ ଯେଉଁ ମୂର୍ତ୍ତିପୂଜା ପାଉଥିଲେ, ତାଙ୍କର ନାମ ଥିଲା ନୀଳମାଧବ । ଦଳେ ପଣ୍ଡିତ କହୁଛନ୍ତି, ସେଠାରେ ଗୋଟିଏ ମାତ୍ର ମୂର୍ତ୍ତି ପୂଜାପାଉଥିଲେ ଏବଂ ତାଙ୍କର ନାମ ନୀଳମାଧବ । କିନ୍ତୁ ଆଉ ଦଳେ ଏହିପରି କହୁଛନ୍ତି---ଏବେ ପୁରୀ ବଡ଼ଦେଉଳରେ ତିନଗୋଟି ମୂର୍ତ୍ତି ପୂଜା-ପାଉଛନ୍ତି । ଗୋଟିଏ ହେଉଛି କଳାରଙ୍ଗର ମୂର୍ତ୍ତି ଏବଂ ଦେବତାଙ୍କର ନାଆଁ

ହେଲେ ଜଗନ୍ନାଥ । ତାଙ୍କ ପାଖରେ ଅଛନ୍ତି ସୁଭଦ୍ରା ନାମଧାରିଣୀ ନାରୀମୂର୍ତ୍ତି । ଭକ୍ତର ଆଖିରେ ସେ ହେଉଛନ୍ତି ସୌନ୍ଦର୍ଯ୍ୟମୟୀ । ତେଣୁ ତାଙ୍କୁ 'ମା' ନାମ ଦିଆଯାଇପାରେ । ମା ଶବ୍ଦର ଅର୍ଥ ଲକ୍ଷ୍ମୀ ଏବଂ ଲକ୍ଷ୍ମୀ ହେଉଛନ୍ତି ସୌନ୍ଦର୍ଯ୍ୟର ଅଧିଷ୍ଠାତ୍ରୀ ଦେବୀ । ତେଣୁ ମୂର୍ତ୍ତିପୂଜକ ଭକ୍ତର ନୟନରେ ସେ ହେଉଛନ୍ତି 'ମା' ।

ତାଙ୍କ ଡାହାଣକୁ ବସିଛନ୍ତି ଧଳାରଙ୍ଗର ମୂର୍ତ୍ତି ବଳଭଦ୍ର । ଧବଳର ତିନୋଟି ଅକ୍ଷରରୁ 'ଧବ' ହେଉଛି ଦୁଇଟି ଅକ୍ଷର, ପଣ୍ଡିତମାନେ କହନ୍ତି—

**"ନାମୈକ-ଦେଶଗ୍ରହଣେଽପି ନାମ-ଗ୍ରହଣମ୍"**

ଅର୍ଥାତ୍ ଜଣେ ଲୋକର ଗୋଟିଏ ନାମରେ ଯେତେ ଅକ୍ଷର ଥାଏ, ସେସବୁ ଅକ୍ଷର ଉଚ୍ଚାରଣ ନ କରି, ତା ଦେହରୁ କେତୋଟି ଅକ୍ଷର ଉଚ୍ଚାରଣ କଲେ ମଧ ସଂପୂର୍ଣ୍ଣ ନାମଟି ଉଚ୍ଚାରଣ କଲାପରି ହୋଇଥାଏ । ଆମେ ଆମ ପୁଅ-ଝିଅଙ୍କୁ ଯେଉଁ ନାମ ଦେଉ, ସେହି ନାମରେ ଥିବା ସବୁ ଅକ୍ଷର ଉଚ୍ଚାରଣ ନ କରି, ତାଙ୍କୁ ଡାକିଲାବେଳେ ଅଳ୍ପ କେତୋଟି ଅକ୍ଷର ଉଚ୍ଚାରଣ କଲେ ମଧ ସେହି ସଂପୂର୍ଣ୍ଣ ନାମଟି ବୁଝାଇଥାଏ । ରାମଚନ୍ଦ୍ରଙ୍କୁ ରାମ, କନକଲତାଙ୍କୁ କନକ, ମହାଦେବଙ୍କୁ ଦେବ, ପ୍ରଫୁଲ୍ଲଙ୍କୁ ଫୁଲ ଇତ୍ୟାଦି ଭାବରେ ଡାକୁଥାଉ । ତେଣୁ ଧବଳ ମୂର୍ତ୍ତିର ବଦଳରେ 'ଧବ' କୁହାଯାଇଥିବା ସମ୍ଭବ ।

ସଂସ୍କୃତରେ 'ନୀଳ' ଶବ୍ଦଟି କଳାର ଭେଦ ବିଶେଷ ବା ଏକପ୍ରକାର 'କଳା' ଭାବରେ ଗୃହୀତ ହୋଇଥାଏ । ପ୍ରସିଦ୍ଧ ସଂସ୍କୃତ ଅଭିଧାନ ଗ୍ରନ୍ଥ 'ଅମରକୋଷ'ରେ କୁହାଯାଇଛି :—

**"କୃଷ୍ଣେ ନୀଲାଽସିତ-ଶ୍ୟାମ-
କାଲ-ଶ୍ୟାମଲ-ମେଚକା ।"**

ଅର୍ଥାତ୍ କୃଷ୍ଣ (କଳା) ଅର୍ଥରେ ନୀଳ, ଅସିତ, ଶ୍ୟାମ, କାଳ, ଶ୍ୟାମଳ ଓ ମେଚକ ଶବ୍ଦ ପ୍ରଯୁକ୍ତ ହୋଇଥାଏ । ସଂସ୍କୃତରେ 'ନୀଳ' ଶବ୍ଦ ଓଡ଼ିଆରେ 'କଳା' ହୋଇଯାଇଥିବା ପରି ପ୍ରତିଭାତ ହୁଏ । ତେଣୁ ଜଗନ୍ନାଥଙ୍କ ଦେହର ରଙ୍ଗକୁ ବର୍ଣ୍ଣନା କରିବା ପାଇଁ ଏସବୁ ଶବ୍ଦ ବ୍ୟବହାର କରାଯାଇଥାଏ । ସୁତରାଂ 'ନୀଳମାଧବ' ଶବ୍ଦ କଳା, ସୌନ୍ଦର୍ଯ୍ୟମୟୀ ଏବଂ ଧଳା, ଏପରି ତିନୋଟି ମୂର୍ତ୍ତିକୁ ବୁଝାଇପାରେ । ତେଣୁ 'ନୀଳମାଧବ' ନାମରୁ ପ୍ରକାଶ-

ଯାଏ ଯେ, ସେଠାରେ ଏଭଳି ତିନିରଙ୍ଗର ତିନିମୂର୍ତ୍ତି ପୂଜାପାଉଥିଲେ ସିନା, ଗୋଟିଏ ମୂର୍ତ୍ତି ନୁହେଁ ।

## ନୀଳଶୈଳ ଉପରେ ମନ୍ଦିର ନିର୍ମାଣ :—

ପୁରୀ ସମୁଦ୍ରକୂଳରେ ଥିବା ନୀଳଶୈଳ ନାମକ ଗୋଟିଆ ପାହାଡ଼ ଉପରେ, ପଶ୍ଚିମ ଭାରତର ଅବନ୍ତୀ ରାଜ୍ୟର ରାଜା ଇନ୍ଦ୍ରଦ୍ୟୁମ୍ନ ପ୍ରଥମେ ଗୋଟିଏ ବଡ଼ଦେଉଳ ତୋଳିଥିଲେ । କିମ୍ବଦନ୍ତୀ ଅନୁସାରେ ତାଙ୍କ ମନ୍ଦିରର ଉଚ୍ଚତା ଥିଲା, ଏକ ହଜାର ହାତ ବା ପ୍ରାୟ ୧୫୦୦ (ଦେଢ଼ହଜାର) ଫୁଟ । ସେ ବଡ଼ ବିଷ୍ଣୁଭକ୍ତ ଥିଲେ । ସେ ଖବର ପାଇଲେ ଯେ, ଉତ୍କଳରେ, ସମୁଦ୍ରତୀରରେ ବିଷ୍ଣୁଙ୍କର ସର୍ବଶ୍ରେଷ୍ଠ ମୂର୍ତ୍ତି ପୂଜିତ ହେଉଛନ୍ତି । ତାଙ୍କୁ ଠାବ କରିବା ପାଇଁ ସେ ବିଦ୍ୟାପତିଙ୍କୁ ପଠାଇଲେ । ବହୁ କଷ୍ଟରେ ଓ ବଡ଼ କୌଶଳରେ, ଶବରରାଜା ବିଶ୍ୱାବସୁଙ୍କ ଦ୍ୱାରା, ନୀଳଶୈଳର ଏକ ଗୁମ୍ଫାରେ ପୂଜାପାଉଥିବା 'ନୀଳମାଧବ'ଙ୍କୁ ଠାବ କରି, ସବୁକଥା ଇନ୍ଦ୍ରଦ୍ୟୁମ୍ନ ମହାରାଜାଙ୍କୁ ଜଣାଇଲେ । ରାଜା ବଡ଼ ଆନନ୍ଦରେ ନୀଳଶୈଳ ପାଖରେ ପହଞ୍ଚିଲାବେଳକୁ ନୀଳମାଧବ 'ଉଭାନ' (ଅଦୃଶ୍ୟ ବା ନିରୁଦ୍ଦିଷ୍ଟ) ହୋଇଗଲେ । ସେ ଦୁଃଖିତ ହୋଇ ପୁଣି ଥରେ ଭକ୍ତବତ୍ସଳ ବିଷ୍ଣୁଙ୍କୁ ଧ୍ୟାନକଲେ । ସ୍ୱପ୍ନଟିଏ ଦେଖି ସେ ଜାଣିପାରିଲେ ଯେ, ଦ୍ୱାପରଯୁଗ ଶେଷ ହେବା ସମୟ ଆସିଯାଇଥିବାରୁ ଶ୍ରୀକୃଷ୍ଣ ଦେହତ୍ୟାଗ କରିଛନ୍ତି । ସେ ଯିବା ପରେ ପାଣ୍ଡବମାନେ ତାଙ୍କୁ (ଆଜିର ଗୁଜରାଟ ରାଜ୍ୟରେ) ଦାହ କରିଛନ୍ତି । ମାତ୍ର ତାଙ୍କ ଦେହର କେତେକ ଅଂଶରେ ନିଆଁ ଲାଗିଲା ନାହିଁ । ସେତେବେଳେ ଗୋଟିଏ ଆକାଶବାଣୀ ଶୁଣାଗଲା । ତାହା ଶୁଣି ପାଣ୍ଡବମାନେ ଶ୍ରୀକୃଷ୍ଣଙ୍କର ଅପୋଡ଼ା ହାଡ଼କୁ ଗୋଟାଏ ଅଦ୍‌ଭୁତ ଗଛ-ଡାଳରେ ବାନ୍ଧି, ସମୁଦ୍ରରେ ଭସାଇଦେଲେ । ସେ ଡାଳ ଭାସି ଭାସି ପୁରୀ ସମୁଦ୍ରକୂଳରେ ଲାଗିଲା ।"

ସ୍ୱପ୍ନର ନିର୍ଦ୍ଦେଶ ଅନୁସାରେ ରାଜା ଇନ୍ଦ୍ରଦ୍ୟୁମ୍ନ ଯଥାକାଳରେ ପାତ୍ର-ମନ୍ତ୍ରୀଙ୍କୁ ଘେନି ସେ ସମୁଦ୍ରକୂଳକୁ ଗଲେ । ଦେଖିଲେ ଯେ, ବିଚିତ୍ର ନୀଳରଙ୍ଗ ବାହାରୁଥିବା ବରଗଛ ଡାଳ ଭାସିଆସୁଛି । ଏବେ ଯେଉଁଠାରେ ଗୁଣ୍ଡିଚା ମନ୍ଦିର ଠିଆହୋଇଛି, ସେହି ସ୍ଥାନକୁ ସେହି ଡାଳ ଅଣାଇ ତିନିମୂର୍ତ୍ତି ତିଆରି କଲେ ।

ଏ ସଂପର୍କରେ ବିସ୍ତୃତ ବିବରଣୀ ରହିଥିବା ଅନେକ ପୁସ୍ତକ ଓଡ଼ିଆରେ ମଧ୍ୟ ପ୍ରକାଶିତ ହୋଇଅଛି । (ଅଧିକ ବିବରଣୀ ଦେବାପାଇଁ ଏଠାରେ ସ୍ଥାନ ନାହିଁ। ସେସବୁ ପୁସ୍ତକ ଏ ପ୍ରସଙ୍ଗରେ ଅଲୋଚ୍ୟ ) ।

ରାଜା ଆଜର ଗୁଣ୍ଡିଚାଘରଠାରେ ତିନମୂର୍ତ୍ତି ଗଢ଼ାଇଲେ ଏବଂ ସେହି ମୂର୍ତ୍ତିଙ୍କୁ ଦେଉଳ ଭିତରେ ପ୍ରତିଷ୍ଠା କରିବାପାଇଁ ନୀଳଗିରି (ନୀଳଶୈଳ) ନାମକ ଛୋଟିଆ ପାହାଡ଼ଟି ଉପରେ ବିରାଟ ଦେଉଳ ନିର୍ମାଣ କଲେ । କାଳକ୍ରମେ ସେ ଦେଉଳ ପୁରୁଣା ହୋଇଗଲା । ଆଜକୁ ପ୍ରାୟ ହଜାରେ-ବର୍ଷତଳେ ମହାରାଜା ଯଯାତିକେଶରୀ ଠିକ୍ ସେହି ଜାଗାରେ ଆଉ ଗୋଟିଏ ଦେଉଳ ତିଆରି କଲେ । ମାତ୍ର ଶହେ/ଦେଢ଼ଶହ ବର୍ଷ ପରେ ସେ ଦେଉଳ ଦୁର୍ବଳ ହୋଇଗଲା । ଚୋଡ଼ଗଙ୍ଗ ନାମକ ରାଜା ଦକ୍ଷିଣରୁ ଆସି ଓଡ଼ିଶା ଅଧିକାର କଲେ । ଆଜକୁ ପ୍ରାୟ ଆଠଶହ ପଚିଶ ବର୍ଷତଳେ, ସେ ଠିକ୍ ସେହି ଜାଗାରେ ଆଉ ଏକ ସୁନ୍ଦର ମନ୍ଦିର ନିର୍ମାଣ କଲେ । ଏବେ ଆମେ ଯେଉଁ ଜଗନ୍ନାଥ ମନ୍ଦିର ଦେଖୁଛୁ, ତାହା ହେଉଛି ଚୋଡ଼ଗଙ୍ଗ ତୋଳିଥିବା ସେହି ମନ୍ଦିର । ପ୍ରାୟ ଚାରିଶହବର୍ଷତଳେ ଦେଉଳ ଉପରେ ଚୂନ ପ୍ରଲେପ ଦିଆଯିବା ଆରମ୍ଭ ହୋଇଥିଲା । ସମୁଦ୍ରର ଲୁଣି ପବନରେ ଦେଉଳର ଆୟୁଷ କମିଯାଉଥିବାରୁ, ତା ଉପରେ ଚୂନର ଲେପ ଦିଆଯାଇଥିଲା । 1974-75ରୁ ଭାରତ ସରକାର ଚୂନ ଛଡ଼ାଇବା କାମ ଆରମ୍ଭ କରିଛନ୍ତି । କିନ୍ତୁ ସଂପୂର୍ଣ୍ଣ ଭାବରେ ଚୂନ ଛଡ଼ାଇବା ପାଇଁ ଆହୁରି କେତେବର୍ଷ ଲାଗିବ ।

କାଳକ୍ରମେ ଚୋଡ଼ଗଙ୍ଗଦେବଙ୍କ ମନ୍ଦିର ଚାରିପଟେ ଅନ୍ୟ ଅନେକ ଦେବଦେବୀ ମନ୍ଦିର ଗଢ଼ିଉଠିଲା । ତା' ଭିତରୁ ଛଅଗୋଟି ଦେବଦେବୀଙ୍କ ମନ୍ଦିରର ନାମ ଏହି ଶ୍ଳୋକରେ ଦିଆଯାଇଛି । ଆଜିର ଯାତ୍ରୀମାନେ ଏସବୁ ମନ୍ଦିରକୁ ଯାଇଥାଆନ୍ତି ।

## 'ନୀଳଶୈଳ' ସଂପର୍କରେ ବିଚିତ୍ର ସମ୍ବାଦ :—

ଏହି 'ନୀଳଶୈଳ', "ନୀଳଗିରି" ବୋଲି ମଧ୍ୟ ବହୁ ସ୍ଥାନରେ ବର୍ଣ୍ଣିତ ଅଛି । ଏହି ୧୯୯୧ ଆରମ୍ଭରେ ମୁଁ ଗୋଟିଏ ଖବର ପାଇ, ତାକୁ କେତେକ ଦୈନିକ-ପତ୍ରିକାରେ ପ୍ରକାଶ କରିଥିଲି । ସେହି ଲେଖାଟି ତଳେ ଉଦ୍ଧାର କରୁଦେଉଛି :—

## ଜଗନ୍ନାଥଙ୍କ ସଂପର୍କରେ ଅଦ୍ଭୁତ ସୂଚନା :—

ଏବେ ନିକଟରେ କଟକର ଜଣେ ବଶିଷ୍ଟ ବ୍ୟକ୍ତି ମୋ ନିକଟକୁ ଆସି ତାଙ୍କର ଗୋଟିଏ ଅନୁଭୂତ ବିଷୟ ପ୍ରକାଶ କରିଥିଲେ । ମତେ ଭେଟିବାର ଦୁଇଦିନ ପୂର୍ବରୁ ସେ ରେଲରେ କଲିକତାରୁ ଫେରୁଥିଲେ । ଜଣେ ସହଯାତ୍ରୀ ତାଙ୍କୁ ଏଭଳି ଭାବରେ କହିଥିଲେ---

'ମୁଁ କିଛିଦିନତଳେ ପଶ୍ଚିମ ବଙ୍ଗଳା-ନଦିଆ ଅଞ୍ଚଳକୁ ଯାଇଥିଲି । ସେଠାରେ ଆମେରିକାର 'ଇସ୍କନ୍' ପକ୍ଷରୁ ପ୍ରତିଷ୍ଠିତ ବିରାଟ ଲାଇବ୍ରେରୀରେ ଥିବା ଗୋଟିଏ ଇଂରାଜୀ ବହି ପଢ଼ିଲି ଓ ଜଗନ୍ନାଥଙ୍କର ଗୋଟିଏ କଥା ଜାଣି ଆଶ୍ଚର୍ଯ୍ୟ ହୋଇଯାଇଥିଲି । ସେ ବହିଟି ହେଉଛି 'ସେଟେଲାଇଟ' ବା ଉପଗ୍ରହ ସମ୍ପର୍କୀୟ ବହି । କିଛିଦିନତଳେ ଯେତେବେଳେ ମହାକାଶରେ ସେଟେଲାଇଟ୍ ସ୍ଥାପନ କରାଗଲା, ସେତେବେଳେ ବୈଜ୍ଞାନିକମାନେ ଦେଖିଲେ ଯେ, ପୃଥିବୀର କୌଣସି ଏକ ଅଞ୍ଚଳରୁ ନୀଳରଙ୍ଗର ଏକ ବିରାଟ ଗୋଲାକାର ସ୍ରୋତ ଶହ ଶହ ମାଇଲ ଧରି ସିଧାସଳଖ ଆକାଶ ଉପରକୁ ଉଠୁଛି ଏବଂ ବହୁ ଉଚ୍ଚରେ ଚତୁର୍ଦ୍ଦିଗକୁ ଖେଳେଇ ହୋଇଯାଉଛି । କେଉଁଠାରୁ ଏହି ନୀଳରଙ୍ଗର ସ୍ରୋତ ଆସୁଛି ବୋଲି ସେମାନେ ବିସ୍ତାର ସହିତ ଗବେଷଣାକଲେ ଶେଷରେ ସେମାନେ ଜାଣିଲେ ଯେ, ଏହି ସ୍ରୋତ ଭାରତବର୍ଷରୁ ହିଁ ଉପରକୁ ଉଠୁଛି । ତାପରେ ପୁଣି ଗବେଷଣା ଚାଲିଲା । ଶେଷରେ ଜଣାଗଲା ଯେ, ଓଡ଼ିଶାର ସମୁଦ୍ରକୂଳରେ ଯେଉଁଠାରେ ଜଗନ୍ନାଥ ମନ୍ଦିର ଠିଆହୋଇଛି, ଠିକ୍ ସେହି ସ୍ଥାନରୁ ଏହି ନୀଳରଙ୍ଗର ସ୍ରୋତ ବାହାରୁଛି । ପୁରୀ ଜଗନ୍ନାଥ ମନ୍ଦିର ନୀଳଗିରି (ନେଳିଆ ରଙ୍ଗର ପାହାଡ଼) ଉପରେ ନିର୍ମିତ ହୋଇଥିଲା ବୋଲି ପଣ୍ଡିତମାନେ କହିଆସିଛନ୍ତି । ଏବେ ଏହି ଯେଉଁ ସୂଚନା ଆମ ଦୃଷ୍ଟିକୁ ଆସିଅଛି, ଏହା ସତ ହୋଇଥିଲେ, ସମଗ୍ର ମାନବଜାତିର ଇତିହାସରେ ଏହା ହେବ ସର୍ବାଧିକ ବିସ୍ମୟକର ଘଟଣା, ତେଣୁ ପୁରୀ ମନ୍ଦିରର କର୍ତ୍ତୃପକ୍ଷ, ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ, ଓଡ଼ିଶା ସରକାରଙ୍କର କୌଣସି ସଂସ୍ଥା କିମ୍ବା କୌଣସି ବିଦ୍ୟାଳୟ ପକ୍ଷରୁ ନଦିଆ (ମାୟାପୁରୀ)ରେ ପ୍ରତିଷ୍ଠିତ ଇସ୍କନ୍ ସଂସ୍ଥାର ପ୍ରକାଣ୍ଡ ଗ୍ରନ୍ଥାଗାରରୁ ଅସଲକଥା ଜାଣିବା ପାଇଁ ଉଦ୍ୟମ କରାଯିବା ଉଚିତ ମନେହୁଏ ।

## ଚତୁର୍ଥ ଶ୍ଳୋକ ସଂପର୍କରେ :—

ଏହି ଶ୍ଳୋକରେ କୁହାଯାଇଛି ଯେ, ହିନ୍ଦୁଜାତିର ସର୍ବଶ୍ରେଷ୍ଠ ଧର୍ମଗ୍ରନ୍ଥ ହେଉଛି ବେଦ, ଯାହାକି ଚାରି ଭାଗରେ ବିଭକ୍ତ । ସେଥିପାଇଁ ଏକମାତ୍ର ସର୍ବବ୍ୟାପକ ଭଗବାନ୍ ନିଜକୁ ଚାରି ରୂପରେ ପ୍ରକଟିତ କରିଅଛନ୍ତି । ଏ ସଂପର୍କରେ ବଳରାମ ଦାସ ତାଙ୍କର ଗୁପ୍ତଗୀତାରେ ଲେଖିଛନ୍ତି ।

"ବଳଭଦ୍ର ଯେ ସାମ ହୋଇ
ଋଗ୍ ଯେ ସୁଭଦ୍ରା ଅଟଇ
ଯଜୁର୍ବେଦ ଶ୍ରୀଜଗନ୍ନାଥ
ଅଥର୍ବ ସୁଦର୍ଶନ ପାର୍ଥ ।"

ଏହାଛଡ଼ା, ଚତୁର୍ଦ୍ଧାମୂର୍ତ୍ତି ସଂପର୍କରେ ଆଉ ଗୋଟିଏ ମତ ମଧ୍ୟ ରହିଛି । ଆମେ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ଆଲୋଚନାକରି ଯେତେବେଳେ ଗବେଷଣାରେ ପ୍ରବୃତ୍ତ ହେଉ, ସେତେବେଳେ ବୈଦିକ ପଣ୍ଡିତମାନଙ୍କର ମତବାଦ ଆମର ମନେ ପଡ଼ିଯାଏ । ସେମାନେ କହନ୍ତି, ପ୍ରଣବ ବା ଓଁକାରରୁ ବିଶ୍ୱ-ସୃଷ୍ଟି ହୋଇଅଛି । ଓଁକାର ହେଉଛି ଚାରିଗୋଟି ବର୍ଣ୍ଣର ସମଷ୍ଟି, ଯଥା—ଅ+ଉ+ମ+ଅର୍ଦ୍ଧମାତ୍ରା । ଏ ଚାରୋଟି ମିଶିଲେ 'ଓଁ' ହୁଏ । ଚତୁର୍ଦ୍ଧାମୂର୍ତ୍ତିଙ୍କର ରୂପକଳ୍ପନା ଏହି ଚାରିଗୋଟିର ଆକାରକୁ ନେଇ କରାଯାଇଛି । ତେଣୁ ଏହି ଚତୁର୍ଦ୍ଧାମୂର୍ତ୍ତି ତତ୍ତ୍ୱ ବେଦରୁ ଆସିଅଛି ।

ଜଗନ୍ନାଥ ଏକାଧାରରେ ଚତୁର୍ଦ୍ଧାମୂର୍ତ୍ତି ଏବଂ ତିନି ବିଗ୍ରହରେ ପ୍ରକାଶିତ । ବେଦ ଯଦିଓ ଚାରିଗୋଟି, ତଥାପି 'ତ୍ରୟୀ' ବା ପ୍ରଥମ ତିନୋଟି ବେଦ ହିଁ ମୁଖ୍ୟ । ଏହି 'ତ୍ରୟୀ' ଶବ୍ଦ ବହୁ ପ୍ରାଚୀନ ଗ୍ରନ୍ଥରେ ପ୍ରଯୁକ୍ତ, ଯଥା—

(କ) ଭଗବଦ୍‌ଗୀତା—୯।୨୧
(ଖ) ଛାନ୍ଦୋଗ୍ୟ—୧।୧।୯—୪।୧୭।୩
(ଗ) ବୃହଦାରଣ୍ୟକ—୫।୪।୧୨
(ଘ) ମହାନାରାୟଣ—୧୨।୨—୨୨।୧
(ଙ) ଅମରକୋଷ—ଶବ୍ଦାଦିବର୍ଗ—ଶ୍ଳୋକ—୩

ଏହା ବ୍ୟତୀତ ଚତୁର୍ଦ୍ଧାମୂର୍ତ୍ତିତତ୍ତ୍ୱ ସଂପର୍କରେ ଅଧିକ ତଥ୍ୟ ଜାଣିବା ପାଇଁ ଦ୍ରଷ୍ଟବ୍ୟ—ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶଙ୍କ "ଜଗନ୍ନାଥ ମନ୍ଦିର ଓ ଜଗନ୍ନାଥତତ୍ତ୍ୱ" (୧୯୮୨)—ପୃଷ୍ଠା ୯୨ରୁ ୧୧୨ ।

## ପଞ୍ଚମ ଶ୍ଳୋକ ସଂପର୍କରେ :—

ଜଗନ୍ନାଥଙ୍କର ଅସାଧାରଣ ବିଶେଷତ୍ୱ କଅଣ ବୋଲି ଆମକୁ ଯଦି ପ୍ରଶ୍ନ କରାଯାଏ, ତେବେ ଆମେ କହିବା ଯେ, ଏହି କେତୋଟି ନିର୍ଦ୍ଦିଷ୍ଟ ଜିନିଷରେ ଜଗନ୍ନାଥ ମନ୍ଦିର, ଜଗନ୍ନାଥ ଧର୍ମ ଓ ଜଗନ୍ନାଥ ତତ୍ତ୍ୱର ଅସାଧାରଣ ବିଶେଷତ୍ୱ ଫୁଟିଉଠିଛି । ଶ୍ଳୋକର ସରଳାର୍ଥ ଭିତରେ ସେହି ସାତୋଟି ଜିନିଷ ଗୋଟି ଗୋଟି କରି ବୁଝାଇଦିଆଯାଇଛି । ତଥାପି, ପ୍ରତ୍ୟେକଟିର ଅଧିକ ବିଶ୍ଳେଷଣ ଆବଶ୍ୟକ ମନେହୁଏ । ତଳେ ପ୍ରତ୍ୟେକଟି ସଂପର୍କରେ ଅଧିକ ଜ୍ଞାତବ୍ୟ ବିଷୟ ଦିଆଯାଉଛି ।

**୧-ପ୍ରସାଦ—** ଭାରତର ଦେବଦେବୀ ମନ୍ଦିରମାନଙ୍କରେ ଦେବତାଙ୍କୁ ଭୋଗ ଦିଆଯାଏ । ସେହି ଭୋଗକୁ 'ପ୍ରସାଦ' କୁହାଯାଏ । ଓଡ଼ିଶାର ଲିଙ୍ଗରାଜ ମନ୍ଦିର ଏବଂ ଅନ୍ୟାନ୍ୟ ମନ୍ଦିରରେ ମଧ୍ୟ ଅନ୍ନଭୋଗର ବ୍ୟବସ୍ଥା ଅଛି । ସେହି ଅନ୍ନକୁ କେବଳ **ପ୍ରସାଦ** କୁହାଯାଏ ।

କିନ୍ତୁ ପୁରୀ ମନ୍ଦିରରେ ଆମେ ଯେଉଁ ପ୍ରସାଦ ପାଇଥାଉଁ, ତାହା ପ୍ରସାଦ ମାତ୍ର ନୁହେ । ତାହାର ନାମ ହେଉଛି **'ମହାପ୍ରସାଦ'** । ଜଗନ୍ନାଥଙ୍କୁ ଅନ୍ନ, ଡାଲି, ବେସର, ମହୁର, ଶାଗ, ଖଟା, କ୍ଷୀରି ପ୍ରଭୃତି ଯାହା ଦିଆଯାଏ, ତାହା (ପୂଜା ସରିବା ପରେ) ଜଗନ୍ନାଥଙ୍କ ପ୍ରସାଦ ବୋଲି କୁହାଯାଏ । କିନ୍ତୁ, ତାହା ପରେ ପରେ, ସେହି ପ୍ରସାଦକୁ ନିଆଯାଇ, 'ବିମଳା'ଙ୍କୁ ଅର୍ପଣ କରାଯାଏ । ମହାମାୟା, ପୀଠାଧୀଶ୍ୱରୀ ଏବଂ ଶକ୍ତିସ୍ୱରୂପିଣୀ ବିମଳାଙ୍କୁ, ଜଗନ୍ନାଥଙ୍କ ପ୍ରସାଦ ଅର୍ପଣ କରାଯିବା ପରେ ତାର ନାମହୁଏ 'ମହାପ୍ରସାଦ'। ଏ ଦୃଷ୍ଟିରୁ ଓଡ଼ିଶାର ଅନ୍ୟ କୌଣସି ମନ୍ଦିରର 'ପ୍ରସାଦକୁ' 'ମହାପ୍ରସାଦ'ବୋଲି କୁହାଯାଏ ନାହିଁ । ଯେଉଁମାନେ **ପ୍ରସାଦ** ଏବଂ **ମହାପ୍ରସାଦର** ଉପରଲିଖିତ ପ୍ରଭେଦ ନ ଜାଣି, ଅନ୍ୟ ମନ୍ଦିରରେ ଭୋଗହୋଇଥିବା ଅନ୍ନ ପ୍ରଭୃତିକୁ ମହାପ୍ରସାଦ ବୋଲି କହନ୍ତି, ସେମାନେ ସତ୍ୟର ଅପଳାପ କରନ୍ତି । ବସ୍ତୁତଃ, ରାଜ୍ୟପାଳ,

ଜିଲ୍ଲାପାଳ ଏବଂ ତହସିଲଦାର୍ ହେଉଛନ୍ତି ଗୋଟିଏ ଦୃଷ୍ଟିରୁ ନିର୍ଦ୍ଦିଷ୍ଟ ପ୍ରକାରର ସରକାରୀ ଦାୟିତ୍ୱର ଅଧିକାରୀ । ଜିଲ୍ଲାପାଳଙ୍କୁ ରାଜ୍ୟପାଳ କହିଲେ ଯେପରି ଭୁଲ୍ ହେବ, ଜଗନ୍ନାଥ ମନ୍ଦିର ଛଡ଼ା ଅନ୍ୟ ମନ୍ଦିରର ପ୍ରସାଦକୁ ମହାପ୍ରସାଦ କହିଲେ ସେହିପରି ଭୁଲ ହେବ । ଭକ୍ତମାନଙ୍କ ଦୃଷ୍ଟିରୁ ଏହା ଏକ ଧାର୍ମିକ ଅପରାଧରୂପେ ପରିଗଣିତ ହେବ ।

ମହାପ୍ରସାଦର ତିନିପ୍ରକାର ବୈଶିଷ୍ଟ୍ୟ ଅଛି । ସେଗୁଡ଼ିକ ହେଉଛି—

(କ) ଏଥିରେ ଜାତି-ବର୍ଣ୍ଣର ବାଛବିଚାର ନାହିଁ ।
(ଖ) ଏଥିରେ ଅପୂର୍ବ ରନ୍ଧନ କୌଶଳ ରହିଅଛି ।
(ଗ) ପରିମାଣ ଦୃଷ୍ଟିରୁ ସମଗ୍ର ପୃଥିବୀରେ ଏହାର ପଟାନ୍ତର ନାହିଁ ।

ଏଗୁଡ଼ିକର ବିଶ୍ଳେଷଣ କରାଯାଉ—

(କ) ଭାରତରେ ଜାତିଭେଦ ହେଉଛି ଗୋଟାଏ ସାମାଜିକ କୁସଂସ୍କାର । ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର; ଏଭଳି **ଚତୁର୍ବର୍ଣ୍ଣର** କଥା 'ଭଗବଦ୍ ଗୀତା' ପୁସ୍ତକରେ କୁହାଯାଇଛି । ବର୍ଣ୍ଣ ବ୍ୟବସ୍ଥା ହେଉଛି କର୍ମମୂଳକ । ଜଣେ ଲୋକ ଯେଉଁ ପ୍ରକାର କର୍ମ କରେ, ସେହି ପ୍ରକାର ବର୍ଣ୍ଣର ଅନ୍ତର୍ଗତ ବୋଲି ତାକୁ ଧରାଯାଏ । ଜଣେ ଲୋକ ବୈଜ୍ଞାନିକ ହେଲେ, ଶିକ୍ଷକ ହେଲେ, ସାହିତ୍ୟିକ ହେଲେ, ଦାର୍ଶନିକ ହେଲେ ବା ଅନ୍ୟ ପ୍ରକାର ମସ୍ତିଷ୍କର କାର୍ଯ୍ୟ କଲେ, ତାକୁ ବ୍ରାହ୍ମଣ ବୋଲି ଧରାଯାଉଥିଲା । କିନ୍ତୁ ଭାରତର ଦୁର୍ଭାଗ୍ୟକୁ ଏହି ବର୍ଣ୍ଣ ବ୍ୟବସ୍ଥାର ପ୍ରକୃତ ଅର୍ଥ ଲୋକେ ଭୁଲିଗଲେ । ବର୍ଣ୍ଣ ସ୍ଥାନରେ ଜାତିକୁ ନେଇ ଥୋଇଦେଲେ । ଜାତିର ଅର୍ଥ ଜନ୍ମ । ବ୍ରାହ୍ମଣଠାରୁ ଯେଉଁ ପୁଅଟିଏ ଜନ୍ମହେଲା, ସେ ଚଣ୍ଡାଳର କାର୍ଯ୍ୟକଲେ ମଧ୍ୟ ତାକୁ ବ୍ରାହ୍ମଣ ବୋଲି ଧରାଗଲା । କର୍ମ ଅନୁସାରେ ପ୍ରତିଷ୍ଠାପୂଜା ଆଉ ହେଲା ନାହିଁ । ଏଥିରୁ ବାହାରିଲା ଅହଂଭାବ । ବ୍ରାହ୍ମଣର ପୁଅ ବ୍ରାହ୍ମଣ ବର୍ଣ୍ଣର କୌଣସି କାର୍ଯ୍ୟ କଲା ନାହିଁ, କିନ୍ତୁ କହିଲା, "ମୁଁ ସବୁଠାରୁ ବଡ଼" । ଦେବ ମନ୍ଦିରରେ ଦେବତାଙ୍କୁ ଅର୍ପଣ କରାଯାଇଥିବା ଅନ୍ନ ବଡ଼ ପବିତ୍ର ସତ, କିନ୍ତୁ "ବଡ଼ଜାତି ଓ ଶ୍ରେଷ୍ଠ ଜାତି", ଏହି ବିକୃତ ଚିନ୍ତା ଗୋଟାଏ ସାମାଜିକ ନିୟମରେ ପରିଣତ ହୋଇଗଲା । ଦେବ ମନ୍ଦିର ପ୍ରସାଦକୁ ଯଦି ଜଣେ

ତଳ ଜାତିର ଲୋକ ଛୁଇଁ ଦେଲ; ବ୍ରାହ୍ମଣର କୌଣସି ଗୁଣ ନଥିବା ଜଣେ "ବ୍ରାହ୍ମଣ ପୁତ୍ର" ସେ ପ୍ରସାଦ ଖାଇବାକୁ ମନା କରଦେଲ । ମଣିଷ ମଣିଷ ମଧ୍ୟରେ ପରସ୍ପର ଘୃଣାର ଏକ ବିରାଟ ପାଚେରି ଠିଆହୋଇଗଲା । ବିରାଟ ହିନ୍ଦୁ-ସମାଜ, ଏହି "ଛୁଆଁ-ଅଛୁଆଁ ଧାରଣାରେ ଖଣ୍ଡ ଖଣ୍ଡ ହୋଇଗଲା ।

ଭାରତର ଚିନ୍ତାଶୀଳ ଲୋକମାନେ ଏହି ସାମାଜିକ ରୋଗର ପ୍ରତିକାର କଥା ଚିନ୍ତା କରିଥିବେ । ଓଡ଼ିଆ ଜାତି ହୁଏତ ଏହି କ୍ଷେତ୍ରରେ ନେତୃତ୍ୱ ନେଇଥିଲା । ସେଥିପାଇଁ ଜଗନ୍ନାଥ ମନ୍ଦିରରେ ମହାପ୍ରସାଦର ବ୍ୟବସ୍ଥା କରାଯାଇଥିଲା । ଏ ମହାପ୍ରସାଦରେ ଜାତିଭେଦ ନାହିଁ । ଅବଢ଼ା ଆସିଗଲା, ଚୌକପଟେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର, ସବୁଜାତିର ଲୋକେ ବସିଗଲେ । ସମସ୍ତେ ହାତ ବଢ଼ାଇ ଅନ୍ନ ନେବେ, ଡାଲି ନେବେ, ତରକାରି ନେବେ, ଖାଇବେ । ଠିକଏ ହେଲେ ଅହଂଭାବ ନାହିଁ, ଘୃଣାଭାବ ନାହିଁ, ବଡ଼ଜାତି ଓ ଛୋଟ ଜାତିର ଭାବନା ନାହିଁ । ତେଣୁ ସମଗ୍ର ଭାରତବର୍ଷରେ ଜାତି ବିଖଣ୍ଡିତ ହିନ୍ଦୁ-ସମାଜକୁ ସଂହତ (United) କରିବା ପାଇଁ ଜଗନ୍ନାଥଙ୍କ ପ୍ରସାଦ ହେଉଛି ଏକ ଅସାଧାରଣ ପଦାର୍ଥ ।

(ଖ)—ରାନ୍ଧିବାକୁ ହେଲେ ରାନ୍ଧିବା ଲୋକର ହାତ ନାନା କାରଣରୁ ଭାତ, ଡାଲି, ତରକାରିରେ ବାଜିଯାଏ । କିନ୍ତୁ ପୁରୀ ଦେଉଳରେ ଯେଉଁଭଳି କୌଶଳରେ ଅନ୍ନ, ଡାଲି ଓ ବିଭିନ୍ନ ତରକାରି ରନ୍ଧାଯାଏ, ଯୁଗଯୁଗଧରି ସମଗ୍ର ପୃଥିବୀରେ ତାର ପଟାନ୍ତର ନ ଥିଲା, ଏବେ ମଧ୍ୟ ନାହିଁ କହିଲେ ଚଳେ । ଏବେ ମଧ୍ୟ ମାଟି ପାତ୍ରରେ ଥିବା ଅନ୍ନ, ଡାଲି, ତରକାରିକୁ **'ଅବଢ଼ା'** କୁହାଯାଏ । (ଋକ୍‌ସାକୁ ଅନେକ ପାଠୁଆଲୋକ "ରେସ୍‌କା" କହିଲା ପରି, ଅ-ବଢ଼ା ଶବ୍ଦଟିକୁ ଅଶିକ୍ଷିତ ଲୋକେ ଅ-ଭଡ଼ା ବୋଲି କହିଥାଆନ୍ତି ।) ଦେବ ସମର୍ପଣବେଳେ ଏହାକୁ ଘରୋଇ ଅନ୍ନ ପରି ଥାଳିରେ ବଢ଼ାଯାଏ ନାହିଁ। ପାତ୍ରରେ ରଖି (ଅର୍ଥାତ୍ ବଢ଼ା ନ ଯାଇ) ସେବନ କରିବାକୁ ହୋଇଥାଏ । ତେଣୁ, ମହାପ୍ରସାଦର ରନ୍ଧନ ବିଧି ହେଉଛି ଅଦ୍ଭୁତ ଧରଣର ।

(ଗ)—ପରିମାଣ ଦୃଷ୍ଟିରୁ ଦେଖିଲେ ସମଗ୍ର ପୃଥିବୀରେ ଜଗନ୍ନାଥଙ୍କ (ପାକଶାଳା) ବା ରୋଷେଇଶାଳା ଏକ ଅଦ୍ଭୁତ ଜିନିଷ । ଆଜି ପୃଥିବୀରେ

ବଡ଼ ବଡ଼ ସହରମାନଙ୍କରେ ବଡ଼ ବଡ଼ ହୋଟେଲ ଖୋଲୁହେଉଛି । କିନ୍ତୁ ଏକ ସମୟରେ ପାଞ୍ଚହଜାର ଲୋକଙ୍କୁ ଖାଦ୍ୟ ଯୋଗାଇପାରିବା ଭଳି ହୋଟେଲ, ସମଗ୍ର ପୃଥିବୀରେ କେଉଁଠାରେ ହେଲେ ନାହିଁ । ଅଥଚ, କେତେ ଘଣ୍ଟା ଆଗରୁ ବରାଦଦେଲେ, ଜଗନ୍ନାଥ ମନ୍ଦିର ଏକଲକ୍ଷ ଲୋକଙ୍କୁ ସବୁଦିନ ଅନ୍ନ ଓ ବିବିଧ ବ୍ୟଞ୍ଜନ ବା ତିଅଣ ଯୋଗାଇଦେଇପାରୁଛି । ପୁରୀରେ ହେଉଥିବା ବଡ଼ ବଡ଼ ସମ୍ମିଳନୀରେ ଚାରି/ପାଞ୍ଚ ହଜାର ଲୋକଙ୍କୁ ମହାପ୍ରସାଦ ପରିବେଷଣ କରାଗଲାବେଳେ, ପ୍ରଥମଥର ପାଇଁ ପୁରୀ ଆସିଥିବା ଲୋକମାନେ କିପରି ଆଶ୍ଚର୍ଯ୍ୟାନ୍ୱିତ ହୁଅନ୍ତି, ତାହା ନ ଦେଖିବା ଲୋକ କଳ୍ପନା ମଧ୍ୟ କରିପାରିବ ନାହିଁ ।

## ଜଗନ୍ନାଥ ଏକମାତ୍ର ବିଶ୍ୱପିତା, ଏହା ତାହାଁର ପ୍ରମାଣ :—

ଭକ୍ତମାନେ କହିବେ, ଭଗବାନ୍ ହେଉଛନ୍ତି ବିଶ୍ୱପିତା । ଯେତେ ବଡ଼ ବଡ଼ ଧର୍ମ ଅଛି, ସବୁ ଧର୍ମରେ ଜଣେ ଜଣେ ବିଶ୍ୱପିତା ବା ସେଭଳି ବ୍ୟକ୍ତି ଅଛନ୍ତି । ବିଶ୍ୱପିତାଙ୍କ ଦୃଷ୍ଟିରେ ସମଗ୍ର ମାନବଜାତି ତାଙ୍କର ପୁଅ-ଝିଅ । ବିଶ୍ୱପିତାଙ୍କ ଘରକୁ ଯଦି ଲକ୍ଷେ ପୁଅଝିଅ କେତେବେଳେ ଆସିଯାଆନ୍ତି, ସେମାନଙ୍କ ତୁଣ୍ଡରେ ମୁଠାଏ ଅନ୍ନ ଦେବା, ପିତାର କର୍ତ୍ତବ୍ୟ । ଆମ ଓଡ଼ିଶାର ଜଗନ୍ନାଥଙ୍କୁ ଛାଡ଼ିଦେଲେ, ସମଗ୍ର ପୃଥିବୀରେ ଏଭଳି ଆଉ କୌଣସି ବିଶ୍ୱପିତା ଅଛନ୍ତି କି ? ତାଙ୍କ ପାଖକୁ ଏକ ସମୟରେ ଆସୁଥିବା ଲକ୍ଷେ ପୁଅଝିଅଙ୍କ ତୁଣ୍ଡରେ, ଟିକିଏ ଟିକିଏ ମୁଠାଏ ଅନ୍ନ ସେ ଦେଇପାରିବେ । ଏ ଦୃଷ୍ଟିରୁ ଦେଖିଲେ ମଧ୍ୟ, ଜଗନ୍ନାଥ ହେଉଛନ୍ତି ସମଗ୍ର ମାନବ ଜାତିର ଏକମାତ୍ର ପିତା ଏବଂ ଲକ୍ଷେ ପୁଅଝିଅ ଆସିଗଲେ ମଧ୍ୟ, ସେ ତାଙ୍କୁ ଖାଇବାକୁ ଦେଇପାରିବେ ।

ଏହି ଛଅୋଟି ବିଷୟ ଛଡ଼ା, ମହାପ୍ରସାଦର ଆଉ ଗୋଟିଏ ବିଶେଷତ୍ୱ ମଧ୍ୟ ଅଛି, ଯାହାକି ସାଧାରଣ ଲୋକ ବୁଝିପାରିବ ନାହିଁ । ଜଗନ୍ନାଥଙ୍କୁ ବିଭିରେ ତିଆରି ହୋଇଥିବା ପିଠା ଦ୍ରବ୍ୟ ଭୋଗକରାଯାଏ । ଅଦା ପଡ଼େ, ହିଙ୍ଗୁ ପଡ଼େ ଏବଂ ରନ୍ଧାଯିବା ଜିନିଷରେ କେତେକ କଟକଣା ଅଛି । ପଣ୍ଡିତମାନେ କହନ୍ତି, ବୈଦିକ ବିଧିର ଖାଦ୍ୟ ପଦାର୍ଥ ଏବଂ ତାନ୍ତ୍ରିକ ବିଧିର

ଖାଦ୍ୟ ପଦାର୍ଥ ସମାନ ନୁହେଁ । ତାନ୍ତ୍ରିକ ପୂଜାରେ ମାଛ ଓ ମାଂସ ଦେବୀଙ୍କୁ ଅର୍ପଣ କରାଯାଏ । ମହାପ୍ରସାଦରେ ଥିବା ବରି ଏବଂ ଅଦାଘଟିତ ପଦାର୍ଥ ତାନ୍ତ୍ରିକ ପଦାର୍ଥର ସ୍ଥାନ ଅଧିକାର କରିଥାଏ । ବାସ୍ତବରେ ଜଗନ୍ନାଥଙ୍କର ସମନ୍ୱୟବାଦ ବଡ଼ ବିଚିତ୍ର ଧରଣର ।

**୨-ପ୍ରାସାଦେ—** ଜଗନ୍ନାଥଙ୍କ ମନ୍ଦିର ହେଉଛି ଏକ ସୁରମ୍ୟ ପ୍ରାସାଦ । ଆଠଶହ ବର୍ଷପୂର୍ବେ ଆଜିର ଏହି ଜଗନ୍ନାଥ ମନ୍ଦିର ନିର୍ମିତ ହେଲାବେଳେ ଏହା ବୋଧହୁଏ ଭାରତର ଉଚ୍ଚତମ ମନ୍ଦିର ଥିଲା । ଏହା ଯେତେବେଳେ ପୂର୍ଣ୍ଣତା ଲାଭକଲା, ଦେଖାଗଲା ଯେ, ଭାରତର ଚାରିଅଂଶରେ-ଥିବା ଚାରିପ୍ରକାର ମନ୍ଦିରକଳା ଏଥିରେ ଆସି ସମନ୍ୱିତ ହୋଇଯାଇଛି, ଯଥା— ୧- ନାଗର, ୨- ବେଶର, ୩- ଦ୍ରାବିଡ଼ ଓ ୪- କଳିଙ୍ଗ । ଭାରତରେ ଭାବାତ୍ମକ ଓ କଳାତ୍ମକ ସମନ୍ୱୟ ପ୍ରତିଷ୍ଠା କରିବାର ଲକ୍ଷ୍ୟ ଏହି ମନ୍ଦିର ନିର୍ମାଣ ମୂଳରେ ହିଁ ବିଦ୍ୟମାନ ରହିଅଛି । ଦ୍ୱିତୀୟରେ ପ୍ରାସାଦ ତିଆରି ହୋଇଛି, ଗୋଟିଏ ପାହାଡ଼ ଉପରେ । ଏହା ଭୂମିଠାରୁ ବହୁ ଉଚ୍ଚରେ । ତେଣୁ ପର୍ବତର ଉପରିଭାଗ ସ୍ୱର୍ଗର ସୂଚନା ଦିଏ । ଏହା ଭକ୍ତମାନସର ଏକ କଳାତ୍ମକ ରୂପାୟନ । ଏହାକୁ Symbolic ଭାବରେ ରୂପାୟିତ କରାଯାଇଛି ।

**୩-ବପୁଷି—** ବପୁର ଅର୍ଥ ଦେହ, ତେଣୁ ବପୁଷି = ଦେହରେ । ଜଗନ୍ନାଥଙ୍କର ବପୁ ବା ଦେହକୁ ଦେଖିଲେ ଜଣାଯାଏ ଯେ, ଏଭଳି ବିଶେଷତ୍ୱ ପୃଥିବୀର କୌଣସି ଦେବତା-ମୂର୍ତ୍ତିରେ ଦେଖିବାକୁ ମିଳେ ନାହିଁ । ମୂର୍ତ୍ତି ତିଆରି ହୋଇଛି ନିମ୍ବକାଠରେ । ଆଖି ଦୁଇଟି ହେଉଛି ଜଗନ୍ନାଥଙ୍କର ଦୁଇପ୍ରକାର ବିଶେଷତ୍ୱର ପ୍ରତୀକ । ପ୍ରଥମ ବିଶେଷତ୍ୱ ହେଲା— ସେ ହେଉଛନ୍ତି ନବଗ୍ରହର ପ୍ରତୀକ । ଚନ୍ଦ୍ର ଏବଂ ସୂର୍ଯ୍ୟ ନବଗ୍ରହ ଭିତରୁ ଦୁଇଟି ଗ୍ରହ । ଜଗନ୍ନାଥଙ୍କ ଆଖିଦୁଇଟି ସେହି ଚନ୍ଦ୍ର ଏବଂ ସୂର୍ଯ୍ୟଙ୍କର ପ୍ରତୀକ । ଗ୍ରହରୂପୀ ଜନାର୍ଦ୍ଦନ, ଅର୍ଥାତ୍ ନିଜେ ଭଗବାନ୍ (ଅର୍ଥାତ୍ ବିଷ୍ଣୁ) ହିଁ ସୂର୍ଯ୍ୟ ଓ ଚନ୍ଦ୍ର, ତାହାଙ୍କର ଦୁଇଟି ଆଖିରୁ ଏହା ସୂଚିତ ହୁଏ ।

ଦ୍ୱିତୀୟରେ, ତାଙ୍କ ଦେହ ଓ ସ୍ଥାପିତ ହେବା ସ୍ଥାନ ପ୍ରଭୃତିରୁ ଏକଥା ସୂଚିତ ହୁଏ ଯେ, ସେ ହେଉଛନ୍ତି, ସ୍ୱୟଂ ଅବତାରୀ, ଅର୍ଥାତ୍ ଦଶଟିଯାକ ଅବତାର ତାଙ୍କଠାରୁ ପ୍ରକାଶ ଲାଭ କରିଛନ୍ତି । ଜଗନ୍ନାଥଙ୍କର ଆଖି ଦୁଇଟି ମାଛଆଖିର ପ୍ରତୀକ । କାରଣ, ସମସ୍ତଙ୍କ ଆଖିରେ ପତା ବା ଘୋଡ଼ଣୀ ଥାଏ । କେବଳ ମାଛର ଆଖିରେ ଘୋଡ଼ଣୀ ନଥାଏ । ମତ୍ସ୍ୟ ଅବତାର ହେଉଛି ଭଗବାନଙ୍କ ପ୍ରଥମ ଅବତାର । ଜଗନ୍ନାଥଙ୍କୁ ଚାହିଁଲେ ସର୍ବପ୍ରଥମେ ଆଖିପଡ଼େ, ତାଙ୍କର ଦୁଇଆଖି ଉପରେ । ତେଣୁ ଜାଣିବାଲୋକ ଅନୁଭବ କରେ ଯେ, ଜଗନ୍ନାଥହିଁ ଦଶଅବତାରର ମୂଳ ଏବଂ ଘୋଡ଼ଣୀ ନଥିବା ତାଙ୍କର ଏହି ଆଖିଦୁଇଟି ମୀନ ବା ଆଦ୍ୟ ଅବତାରରୂପେ ସୂଚିତ ।

ଦେହ ତୁଳନାରେ ଅଣ୍ଟାଟି ବହୁତ ସରୁ, ଅର୍ଥାତ୍ ସେ ହେଉଛନ୍ତି କ୍ଷୀଣ କଟୀ । ଭାରତୀୟ ସାହିତ୍ୟରେ ସିଂହର କଟୀ ବା ଅଣ୍ଟା ବହୁତ ସରୁବୋଲି ସମସ୍ତ ବଡ଼ କବି ବର୍ଣ୍ଣନା କରିଛନ୍ତି । ସିଂହ ହେଉଛି ଭଗବାନଙ୍କ ଚତୁର୍ଥ ଅବତାର । ତେଣୁ ଜଗନ୍ନାଥଙ୍କ ଦେହର ଗଠନଭଙ୍ଗୀ ଦେଖିଲେ ମନେ ହୁଏ ଯେ, ସେ ସିଂହ ଅବତାର ରୂପେ ପ୍ରକଟିତ ହୋଇଥିଲେ ।

ବରାହ ଭଗବାନଙ୍କର ଆଉ ଗୋଟିଏ ଅବତାର । ପାହାଡ଼ର ଗୁମ୍ଫାଭିତରେ ବରାହ ଲୁଚିକରି ରହେ । ଯେତେବେଳେ ସେ ଖୋଲାଜାଗା ଅର୍ଥାତ୍ ବାହାରକୁ ଆସେ, ସେତେବେଳେ ଗାଁ ଲୋକଙ୍କ ମନରେ ଚାଞ୍ଚଲ୍ୟ ଖେଳିଯାଏ । ଜଗନ୍ନାଥ ସେହିପରି ପୁରୀ ମନ୍ଦିରର ଗର୍ଭଗୃହ ଭିତରେ ଅନ୍ଧାରରେ ଲୁଚିକରି ରହିଛନ୍ତି । ଦେବସ୍ନାନ ପୂର୍ଣ୍ଣିମାଦିନ ଏବଂ ରଥଯାତ୍ରା-ଦିନ ସେ ଯେତେବେଳେ ଅନ୍ଧାରୁଆ ଗୁମ୍ଫାପରି ହୋଇଥିବା ଗର୍ଭଗୃହ ଭିତରୁ ବାହାରି ପଦାକୁ ଆସନ୍ତି, ଲକ୍ଷ ଲକ୍ଷ ଲୋକଙ୍କ ଭିତରେ ଚାଞ୍ଚଲ୍ୟ ଖେଳିଯାଏ । ଏଭଳି ଦେବମୂର୍ତ୍ତି ବା ଦେବତାଙ୍କ, ବପୁ (ଦେହ)ର ପରିକଳ୍ପନା ସମଗ୍ର ପୃଥିବୀରେ ଅନ୍ୟ କେଉଁଠାରେ ନାହିଁ ।

ଏହାଛଡ଼ା ଖ୍ରୀଷ୍ଟଧର୍ମ, ଇସ୍‌ଲାମ୍‌ଧର୍ମ, ଅଗ୍ନି ଉପାସନା ମୂଳକ ଜୋର-ଷ୍ଟ୍ରିଆନ୍ ଧର୍ମ, ବୃକ୍ଷଉପାସନା ମୂଳକ ଆଦିମଧର୍ମ ପ୍ରଭୃତି ଧର୍ମଧାରା ମଧ୍ୟ ଜଗନ୍ନାଥଙ୍କ ଦେହର ନିର୍ମାଣ କୌଶଳ ଭିତରେ, ସୂଚନାତ୍ମକ ରୂପେ ସ୍ଥାନଲାଭ

କରଅନ୍ତି । ଏହାକୁ ତତ୍ତ୍ୱଜ୍ଞ ପଣ୍ଡିତମାନେ ନାନାଭାବରେ ବୁଝାଇ ଥାଆନ୍ତି । ୧୯୭୭—୭୮ରେ ପୁରୀ ସମୁଦ୍ରକୂଳରେ ହୋଇଥିବା ବିଶ୍ୱଧର୍ମ ସମ୍ମିଳନୀରେ ଏହି ସବୁ ଧର୍ମର ସମନ୍ୱୟ ବା ସମାବେଶ ଜଗନ୍ନାଥଙ୍କଠାରେ କିପରି ହୋଇଛି, ତାହା ଏହି ଲେଖକ ବୁଝାଇଥିଲେ ।

ଜଗନ୍ନାଥଙ୍କର ଦେହ ବା ବପୁ ଯଦିଓ ନିମ୍ବକାଠର ଗଣ୍ଡିରୁ ତିଆରି, ତଥାପି ସେହି ଦାରୁ-ବିଗ୍ରହ ବା କାଠତିଆରି ମୂର୍ତ୍ତି ମନୁଷ୍ୟ ପରି କାର୍ଯ୍ୟ କରିବାର ବିଧି ବା ନୀତି ବିଭିନ୍ନ ଉତ୍ସବରେ ଅନୁସୃତ ହୋଇଥାଏ । ଆମେ ଯେପରିକି ବର୍ଷକରେ ଥରେ ମହାଳୟା ଉତ୍ସବ ପାଳନ କରି ପିତୃପୁରୁଷଙ୍କୁ ପିଣ୍ଡଦାନ କରିଥାଉ, ଜଗନ୍ନାଥ ସେହିପରି ତାଙ୍କର ପିତୃକଳ୍ପ ଇନ୍ଦ୍ରଦ୍ୟୁମ୍ନ ମହାରାଜାଙ୍କୁ ଏବଂ ପିତୃକଳ୍ପ ଅନେକଙ୍କୁ ମଧ୍ୟ ପିଣ୍ଡଦାନ ଦେଇଥାଆନ୍ତି । ଏହି ମୂର୍ତ୍ତି କେବଳ ଅନ୍ୟମାନଙ୍କ ଦ୍ୱାରା ପୂଜିତ ହୁଅନ୍ତି ନାହିଁ । ଅନେକ୍କୁ ପୂଜାକରି ନିଜେ ନିଜର (ଜାପାନୀମାନଙ୍କ ପରି) ପିତୃପୁରୁଷଙ୍କର ପୂଜା ମଧ୍ୟ କରିଥାଆନ୍ତି ।

**୪-ବହୁବେଶେଷୁ**—ଜଗନ୍ନାଥ ବର୍ଷର ବିଭିନ୍ନ ଅବସରରେ ଭିନ୍ନ ଭିନ୍ନ ଦେବତାରୂପେ ସେହି ସେହି ଦେବତାମାନଙ୍କ ବେଶରେ ସଜ୍ଜିତ ହୁଅନ୍ତି । ହିନ୍ଦୁ-ଜାତିର ବିଶିଷ୍ଟ ଦେବତାମାନେ ଯେଉଁସବୁ ବେଶରେ ଭୂଷିତ ହୁଅନ୍ତି, ସେହିସବୁ ବେଶରେ ମଧ୍ୟ ଜଗନ୍ନାଥ ଭୂଷିତ ହୋଇଥାଆନ୍ତି । ଗୋଟିଏ ବର୍ଷ ଯଦି ଆମେ ତାଙ୍କର ସମସ୍ତ ବେଶ ଦେଖିବା, ଆମେ ଅନୁଭବ କରିବା ଯେ, **ପରମାତ୍ମା**, ପରମପୁରୁଷ, ଅମର ଏହି ଜଗନ୍ନାଥ ହିଁ ସମସ୍ତ ଦେବାଦେବୀରୂପେ ନିଜକୁ ପ୍ରକାଶିତ କରିଥିଲେ ଏବଂ ଏହି କଥା ଲୋକମାନଙ୍କୁ ଜଣାଇବା ପାଇଁ ବର୍ଷକୁ ଥରେ, ସେହି ସେହି ଦେବତାମାନଙ୍କ ବିଶିଷ୍ଟ ବେଶରେ, ନିଜକୁ ଭୂଷିତ କରିବାର ପରଂପରା ରକ୍ଷାକରିଆସିଛନ୍ତି ଏବଂ ବିବିଧ ଦେବତାଙ୍କ ବେଶ, ମନ୍ଦିର ନୀତିରେ ଅନ୍ତର୍ଭୁକ୍ତ ହୋଇଅଛି ।

ଜଗନ୍ନାଥ ମହାପ୍ରଭୁଙ୍କ ବିଭିନ୍ନ ବେଶଧାରଣ ସମ୍ପର୍କରେ ତାଙ୍କର ପରମ ଭକ୍ତ କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜ "କୋଟି-ବ୍ରହ୍ମାଣ୍ଡ-ସୁନ୍ଦରୀ"ରେ (ପ୍ରଥମ ଛାନ୍ଦ) କହିଅଛନ୍ତି—

**"ଦଶଅବତାର ଲୀଳା ଯାତ୍ରା ବିରଚନ**
**ଜନଙ୍କୁ ଦେଖାନ୍ତ ଯୁଗାନ୍ତର କଥାମାନ ହେ ।'**

ଏହାର ଅର୍ଥ---"ହେ ଭକ୍ତଗଣ, ମୁଁ ଏବେ ଯେଉଁସବୁ ବେଶରେ ଭୂଷିତ ହେଉଛି, ଅତୀତରେ ମୁଁ ସେହି ସବୁ ରୂପ ଧାରଣ କରିଥିଲି"—

**୪-ମତେ ବା ଧର୍ମମତରେ—**ଭାରତର ଧର୍ମ ରାଜ୍ୟରେ ମତ ବୋଲନ୍ତେ ଦେବଦେବୀ ମୂଳକ କିମ୍ବା ଉପାସନା ମୂଳକ କିମ୍ବା ଦାର୍ଶନିକ ମତ ବା ମତବାଦ ହିଁ ବୁଝାଯାଏ । ଜଗନ୍ନାଥଙ୍କଠାରେ ସମସ୍ତ ମତ ସମନ୍ୱିତ ହୋଇଅଛି । ଉପନିଷଦ୍ ଅନୁସାରେ ପରମ ପୁରୁଷ ହେଉଛନ୍ତି 'ଅପାଣି ପାଦ' । ଅର୍ଥାତ୍ ତାଙ୍କର ହାତ ନାହିଁ କି ପାଦ ନାହିଁ । ଜଗନ୍ନାଥଙ୍କର ବପୁ ଏବଂ ମତ (ମତବାଦ) ଏ ଦୁଇଟିଯାକ ବୈଦିକ ଚିନ୍ତାଧାରାର ଅନୁରୂପ । ଶ୍ୱେତାଶ୍ୱତର ଉପନିଷଦରେ ଅଛି—

**"ଅପାଣିପାଦୋ ଜବନୋ ଗ୍ରହୀତା ।"** ଇତ୍ୟାଦି

ଅତଏବ, ଭାରତରେ ଯେଉଁସବୁ ଦେବଦେବୀ ଉପାସକ ଅଛନ୍ତି, ସେମାନଙ୍କର ବିଭିନ୍ନ ମତ ପ୍ରତି ସମ୍ମାନ ଦିଆଯାଇ, ଜଗନ୍ନାଥଙ୍କର ବିଭିନ୍ନ ବ୍ୟବସ୍ଥା କରାଯାଇଛି ।

ଭାରତର ଆସ୍ତିକ ତଥା ଈଶ୍ୱରବିଶ୍ୱାସୀ ଦାର୍ଶନିକମାନେ ମୋଟାମୋଟି ଦୁଇଭାଗରେ ବିଭକ୍ତ, ଯଥା—ଅଦ୍ୱୈତବାଦୀ ଏବଂ ଦ୍ୱୈତବାଦୀ । ଅଦ୍ୱୈତ-ବାଦ ଅନୁସାରେ ଜୀବାତ୍ମା ଏବଂ ପରମାତ୍ମା ଏକ । ଦ୍ୱୈତବାଦ ଅନୁସାରେ ପରମାତ୍ମା ଏବଂ ଜୀବାତ୍ମା ଏକ ନୁହନ୍ତି, ଅଭିନ୍ନ ନୁହନ୍ତି । ଦୁହେଁ ହେଉଛନ୍ତି ଭିନ୍ନ ଭିନ୍ନ ବା ଅଲଗା ଅଲଗା ।

ଜଗନ୍ନାଥଙ୍କୁ ମୂର୍ତ୍ତିତତ୍ତ୍ୱ ଦୃଷ୍ଟିରୁ ଦେଖିଲେ, ସେ ହେଉଛନ୍ତି ଏକାଧାରରେ ଅଦ୍ୱୈତମତର ଅନୁରୂପ ଏବଂ ଦ୍ୱୈତମତର ଅନୁରୂପ । ସେ ଦ୍ୱୈତମତର ଅନୁରୂପ, କାରଣ ସେ ଚତୁର୍ଦ୍ଧାମୂର୍ତ୍ତି । କିନ୍ତୁ ସେ ହେଉଛନ୍ତି ଏକ ଏବଂ ଅଭିନ୍ନ, ତେଣୁ 'ଅଦ୍ୱୈତ' ।

ଏଣୁ ଭାରତବର୍ଷର ଭିନ୍ନ ଧର୍ମଧାରା ଏବଂ ଦାର୍ଶନିକମାନଙ୍କର ବିଭିନ୍ନମତ ଜଗନ୍ନାଥଙ୍କଠାରେ ଅଦ୍ଭୁତ ଭାବରେ ସମନ୍ୱିତ ହୋଇ ରହିଛି ।

**୭-ରଥାଟେଁ—** ରଥ ଦୃଷ୍ଟିରେ (ରଥ+ଅଟେଁ=ରଥାଟେଁ) । ଏଠାରେ ରଥଶବ୍ଦ ରଥଯାତ୍ରା ଅର୍ଥରେ ପ୍ରଯୁକ୍ତ ହୋଇଅଛି । କାରଣ, ଜଗନ୍ନାଥଙ୍କ ପ୍ରସଙ୍ଗରେ ରଥଶବ୍ଦ ଶୁଣିବାମାତ୍ରେ, ରଥଯାତ୍ରା କଥା ଆମର ମନେ ପଡ଼ଇ । ରଥ ଆଦରେ ଯାତ୍ରାର । ଜଗନ୍ନାଥ ମହାପ୍ରଭୁଙ୍କର ବାରମାସରେ ତେରଟି ବଡ଼ ଯାତ୍ରା ବା ଉତ୍ସବ ଅନୁଷ୍ଠିତ ହୋଇଥାଏ । ସେହି ତେରଯାତ୍ରା ଭିତରେ ରଥଯାତ୍ରା ସର୍ବପ୍ରଥମେ ଆମ ମନରେ ପ୍ରତିଭାତ ହୋଇଥାଏ । ରଥଯାତ୍ରା ପ୍ରଭୃତି ବିଭିନ୍ନ ଯାତ୍ରାରେ ଜଗନ୍ନାଥଙ୍କର ଆଉ ଏକ ଅସାଧାରଣ ବୈଶିଷ୍ଟ୍ୟ ସୂଚିତ ହୋଇଥାଏ । ଦେବସ୍ନାନ ପୂର୍ଣ୍ଣିମାରେ ସେ ହାତିବେଶ ହୁଅନ୍ତି । ତାଙ୍କ ଦେହରେ ମାନ୍ଦ ରହିଅଛି । ତାଙ୍କ ରହିବା ସ୍ଥାନଟିରୁ ଅରଣ୍ୟ ବା ପର୍ବତବାସୀ ବର୍ବରର ସୂଚନା ମିଳେ । ତାଙ୍କ ବାମନ-ବେଶ ବୈଦିକ ବାମନଅବତାରର ସୂଚନା ଦିଏ ଏବଂ ଦୁଷ୍ଟ ରାଜାଙ୍କୁ ଅପସାରଣ କରିବାର ସୂଚନା ଦିଏ । ତାଙ୍କ ରାଜବେଶ, ଆଦର୍ଶ ରାଜ୍ୟ-ଶାସକର ତଥା ଆଦର୍ଶ ପ୍ରଶାସନର ସୂଚନା ଦିଏ । ତାଙ୍କ ଚନ୍ଦନଯାତ୍ରା ଓ ଝୁଲଣଯାତ୍ରା ସୂଚନା ଦିଏ ଯେ, ସେ ହେଉଛନ୍ତି ଜଳ ଓ ଆକାଶର ମଧ୍ୟ ଅଧିପତି । ତାଙ୍କ ଦୋଳଯାତ୍ରା ଏବଂ ଝୁଲଣଯାତ୍ରାବେଳେ ସେ ଆକାଶରେ (ଅଂଶ-ସୂଚନାତ୍ମକ ଭାବରେ) ଗତି କରନ୍ତି । ତେଣୁ ଆକାଶର ଅଧିପତି ଥିବା କଥା ଏହି ଉତ୍ସବ ଦ୍ୱାରା ବ୍ୟଞ୍ଜିତ ହୁଏ । ରଥଯାତ୍ରା ଦିନ ରଥରେ ବସି ପୃଥିବୀର ଲୋକମାନଙ୍କ ଦ୍ୱାରା ଟଣାଯାଉଥିବା ରଥରେ ସେ ବସି ଯାଆନ୍ତି । ଏହାଦ୍ୱାରା ସ୍ଥଳଭାଗର ଅଧିପତିରୂପେ ତାଙ୍କୁ ଅନୁଭବ କରାଯାଏ । ଅର୍ଥାତ୍ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ—ଏହି ତିନିପୁରର ସେ ଅଧିପତି । ତାଙ୍କର ଏହି ଯାତ୍ରାଦ୍ୱାରା, ତାଙ୍କର ମହାନ୍ ଗୌରବ, ତାଙ୍କ ଭକ୍ତମାନେ ଅନୁଭବ କରିଥାଆନ୍ତି ।

ତେର ପର୍ବ ଭିତରୁ ରଥଯାତ୍ରାକୁ ପ୍ରଥମ ଓ ପ୍ରଧାନ ସ୍ଥାନ ଦିଆଯିବାର କାରଣ ଏହି ଯେ, ରଥ ଉପରେ ରାଜ୍ୟର ସର୍ବୋଚ୍ଚ ଶାସକ, ଚଣ୍ଡାଳ ବେଶ ଧାରଣକରି, ଜଗନ୍ନାଥଙ୍କ ଶ୍ରୀରପଟ୍ଟ ଅଗଣାରେ ଝାଡ଼ୁଦାରରୂପେ କାର୍ଯ୍ୟ

କରିଥାଆନ୍ତି । ଏହି ବିଧି ଭିତରଦେଇ ଜଗନ୍ନାଥ ସଂସ୍କୃତି ଘୋଷଣା କରେ ଯେ, ଅର୍ଥନୀତି ଏବଂ ଶିକ୍ଷାନୀତି କ୍ଷେତ୍ରରେ, ମନୁଷ୍ୟସମାଜରେ ଶ୍ରେଷ୍ଠ ବଡ଼ର ବିଚାର କରାଯାଇପାରେ, କିନ୍ତୁ ବିଶ୍ୱପିତା ଭଗବାନଙ୍କ ସେବାକ୍ଷେତ୍ରରେ ରାଷ୍ଟ୍ରର ସର୍ବୋଚ୍ଚ ନାୟକ (ସେ କାଳର ମହାରାଜା) ବଡ଼ ନୁହନ୍ତି କିମ୍ବା ଝାଡ଼ୁଦାର ଶ୍ରେଷ୍ଠ ନୁହେଁ । ସମାଜର ଉଚ୍ଚ ସ୍ତରରେ ରହୁଥିବା ବରିଷ୍ଠ ଧର୍ମୀ ଏବଂ ମହାତ୍ମାମାନଙ୍କୁ ଅତି ନିମ୍ନ ସାମାଜିକ ସ୍ତରରେ ରଖାଯାଇଥିବା ହରିଜନମାନଙ୍କୁ ଏକତ୍ର ଯୋଡ଼ିବାର ମହାନ୍ ଆଦର୍ଶ ଶିଖାଇବା ପାଇଁ ରଥଯାତ୍ରାବେଳେ ଛେରା-ପହରା ବ୍ୟବସ୍ଥା କରାଯାଇଥିଲା । ଏଭଳି ଏକ ମାନବବାଧି-ବିଧିବିଧାନ ପୃଥିବୀର କୌଣସି ଦେଶର ରଥଯାତ୍ରାରେ ନ ଥିଲା ଏବଂ ନାହିଁ ମଧ୍ୟ ।

ଏ ଦୃଷ୍ଟିରୁ ରଥଯାତ୍ରା ହେଉଛି, ଜଗନ୍ନାଥ ଧର୍ମର ଅଦ୍ଭୁତପୂର୍ବ ଏବଂ ଅତୁଳନୀୟ ବିଶେଷତ୍ୱ ।

ଦ୍ୱିତୀୟରେ, ମହାପ୍ରଭୁ ଜଗନ୍ନାଥ ରଥଯାତ୍ରା ଦିନ ରଥ ଉପରକୁ ଉଠିଯିବା ପରେ ସଂପୂର୍ଣ୍ଣ ଭାବରେ ପତିତପାବନ ହୋଇଯାଆନ୍ତି । ଜଗନ୍ନାଥ ମହାପ୍ରଭୁ ରଥ ଉପରେ ଥିଲାବେଳେ ପୃଥିବୀର ଯେ କୌଣସି ଧର୍ମର ଓ ଯେ କୌଣସି ଜାତିର ନରନାରୀ ନିଜ ହାତକୁ ଛୁଇଁଲା ପରି, ତାଙ୍କୁ ଛୁଇଁବା ପାଇଁ ଅନୁମତି ଏବଂ ଅଧିକାର ପାଇଥାଆନ୍ତି । ସେଥିପାଇଁ ଜଗନ୍ନାଥ ରଥ ଉପରକୁ ଉଠିଯିବା ପରେ ଗଜପତି ମହାରାଜାଙ୍କ ଦ୍ୱାରା ଛେରାପହଁରା କରାଯିବା ଭିତରେ ପ୍ରାୟ ଦୁଇଘଣ୍ଟା ସମୟ ରଖାଯାଇଥାଏ । ସେତେବେଳେ ପୃଥିବୀର ଯେ କୌଣସି ନରନାରୀ ତାଙ୍କ ପାଖକୁ ଯାଇ, ନିଜ ବାସନା ଅନୁସାରେ ଜଗନ୍ନାଥଙ୍କୁ ଛୁଇଁବାର ଅଧିକାର ସାବ୍ୟସ୍ତ କରିଥାଆନ୍ତି । (କିନ୍ତୁ ଏହା କେବଳ ସୂଚନାତ୍ମକ ଭାବରେ କରାଯାଏ, କାରଣ ଲକ୍ଷ ଲକ୍ଷ ଲୋକ ଯଦି ଏହି ଅଧିକାର ସାବ୍ୟସ୍ତ କରିବାକୁ ଚାହିଁବେ, ତାହାହେଲେ ତ ଆଉ ରଥଯାତ୍ରା ହୋଇପାରିବ ନାହିଁ) ।

ତିନିଗୋଟି ରଥର ମୋଟ ୪୨ଟି ଚକ ଯିବା ଆସିବାରେ ୪୨+୪୨ =୮୪ ହୁଏ । ଏହି ରଥମାନଙ୍କୁ ଟାଣିବା ଲୋକ ୮୪ ନରକ ଧ୍ୱଂସ କରେ ବା ତହିଁରେ ପଡ଼ିବାର ଭୟକୁ ବିନାଶ କରିଥାଏ ।

**୭-ପୂଜାସ୍ଥାମ୍**—ଅର୍ଥାତ୍ ଜଗନ୍ନାଥଙ୍କ ମିଶ୍ରରୂପେ ଗୃହୀତ ହୋଇଥିବା ବିବିଧ ପୂଜାବିଧି । ଯେଉଁଠାରେ ମନ୍ଦିର ଅଛି, ସେଠାରେ କୌଣସି ନା କୌଣସି ପୂଜା କରିବାର ବିଧି ରହିଛି । କିନ୍ତୁ ଜଗନ୍ନାଥ ମନ୍ଦିରରେ ପୂଜା-ବିଧିର ଯେଉଁ ବ୍ୟାପକତା ଦେଖାଯାଏ, ତାହା ଅନ୍ୟ କୌଣସିଠାରେ ଦେଖାଯାଏ ନାହିଁ । ଭାରତବର୍ଷରେ ଚାରିପ୍ରକାର ପୂଜାବିଧି ରହିଅଛି, ଯଥା — (୧) ବୈଦିକ ପୂଜା, (୨) ପୌରାଣିକ ପୂଜା, (୩) ତାନ୍ତ୍ରିକ ପୂଜା ଏବଂ ( ) ଶବର ପୂଜା । ଜଗନ୍ନାଥ ମନ୍ଦିରରେ ବିଭିନ୍ନ ସମୟରେ ଏହି ଚାରି ପ୍ରକାର ପୂଜା ଅନୁଷ୍ଠିତ ହୋଇଥାଏ ।

**ଜ୍ଞାତବ୍ୟ**—ଜଗନ୍ନାଥଙ୍କୁ କଂସା ପାତ୍ରରେ ପଇଡ଼ପାଣି ଅର୍ପଣ କରାଯାଏ । ଏହା ଏକ ତାନ୍ତ୍ରିକ ବିଧି, ଯାହାକି ବୈଷ୍ଣବ-ପୀଠରେ ସମ୍ଭବ ନୁହେଁ । କିନ୍ତୁ ପୁରୀରେ (ବୋଧହୁଏ ଶଙ୍କରାଚାର୍ଯ୍ୟଙ୍କ ସମୟରୁ କିମ୍ବା ତାଙ୍କ ପୂର୍ବରୁ ମଧ୍ୟ) ଏହି ବିଧି ଅନୁସରଣ କରାଯାଉଛି । ଦ୍ୱାଦଶ ଶତାବ୍ଦୀରେ ଗୋଟିଏ ଧର୍ମ ସଂପ୍ରଦାୟ ଏହାକୁ ବନ୍ଦକରି ତାଙ୍କ ନିଜର ରୁଚି ଅନୁସାରେ ଆଉ ଗୋଟିଏ ବିଧି ଚଳାଇବାକୁ ଚେଷ୍ଟା କରିଥିଲେ । କିନ୍ତୁ ସେ ସମୟର ରାଜକୀୟ ସମର୍ଥନସତ୍ତ୍ୱେ, ସେହି ଉଦ୍ୟମ ବିଫଳ ହୋଇଥିଲା ଏବଂ ଏହି ତାନ୍ତ୍ରିକ ବିଧି ପୂର୍ବପରି ଚାଲୁ ରହିଲା । ଏ ସଂପର୍କରେ ଅଜ୍ଞାତାଚାର୍ଯ୍ୟ ନାମକ ଜଣେ ପଣ୍ଡିତ ଲେଖିଥିବା "ପ୍ରପନ୍ନାମୃତମ୍" ନାମକ ସଂସ୍କୃତ ଗ୍ରନ୍ଥ ଦ୍ରଷ୍ଟବ୍ୟ ।

## ଷଷ୍ଠ ଶ୍ଳୋକ ସଂପର୍କରେ :—

ଜଗନ୍ନାଥ ମହାପ୍ରଭୁ ବିଷ୍ଣୁ, ପୁରୁଷୋତ୍ତମ ବୋଲି ସାଧାରଣତଃ ପୂଜିତ ହୋଇଥାଆନ୍ତି । କିନ୍ତୁ ସେ ହେଉଛନ୍ତି ତେତିଶକୋଟି ଦେବତାଙ୍କର ସମନ୍ୱିତ ବିଗ୍ରହ । ଆଜିକାଲି ଆମ ଦେଶରେ ଗଣତନ୍ତ୍ର-ଶାସନ ରହିଛି । ଯେଉଁ ବ୍ୟବସ୍ଥା କରାଇ ପ୍ରତ୍ୟେକ ନାଗରିକଙ୍କୁ ଯଥା ସମୟରେ ଦେଶର ଶାସନ କାର୍ଯ୍ୟର ମୂଳସୂତ୍ରରୂପେ ଅଂଶ ଗ୍ରହଣ କରିବାକୁ ଅଧିକାର ଦିଆଯାଇଛି । କିନ୍ତୁ କୋଟି କୋଟି ଲୋକ ତ ଏକାଠି ହୋଇପାରିବେ ନାହିଁ । ସେଥିପାଇଁ ସେମାନଙ୍କର ପ୍ରତିନିଧିଙ୍କୁ ବଛାଯାଏ । ସେହି ପ୍ରତିନିଧିମାନେ ପୁଣି ନିଜ

ଭିତରୁ ଅଳ୍ପ କେତେଜଣଙ୍କୁ ବାଛନ୍ତି ଏବଂ ସେମାନେ ଦେଶକୁ ଶାସନ କରନ୍ତି । ଅତି ପ୍ରାଚୀନକାଳରୁ ହିନ୍ଦୁଜାତିର ଦେବଦେବୀ ଉପାସନା କ୍ଷେତ୍ରରେ ଏହି ବିଧି ଆଚରିତ ହୋଇଆସିଛି । ତେତିଶକୋଟି ଦେବତାଙ୍କ ଭିତରୁ ପାଞ୍ଚଜଣ ଦେବଦେବୀଙ୍କୁ ସର୍ବଶ୍ରେଷ୍ଠ ବୋଲି ବଛାଯାଇଛି । ସେମାନେ ହେଲେ—

(୧) ବିଷ୍ଣୁ—ବିଶ୍ୱପାଳକ ।
(୨) ଶିବ ବା ରୁଦ୍ର—ବିଶ୍ୱ-ସଂହାରକାରୀ ।
(୩) ଦୁର୍ଗା—ଶକ୍ତି ବା ଚଣ୍ଡୀ-ସର୍ବଜନନୀ ।
(୪) ସୂର୍ଯ୍ୟ—ବିଶ୍ୱଦ୍ୟୋତକ ।
(୫) ଗଣେଶ—ବିଘ୍ନ-ବିନାଶକ ।

ପୁରୀ ଦେଉଳରେ ଜଗନ୍ନାଥଙ୍କୁ ସାଧାରଣତଃ ବିଷ୍ଣୁ-ପୁରୁଷୋତ୍ତମ ଭାବରେ ପୂଜା କରାଯାଉଥିଲେମଧ୍ୟ, ଅନ୍ୟ ଚାରିଗୋଟି ଦିନରେ ବା ଅବକାଶରେ ତାଙ୍କୁ ନିମ୍ନଲିଖିତ ଦେବତା ଭାବରେ ପୂଜାକରାଯାଏ । ଯଥା—

(୧) ସୂର୍ଯ୍ୟ— ରଥଯାତ୍ରାଦିନ
(୨) ଗଣେଶ— ଜ୍ୟେଷ୍ଠ ପୂର୍ଣ୍ଣିମାଦିନ ବା ଦେବସ୍ନାନ ପୂର୍ଣ୍ଣିମାଦିନ
(୩) ଦୁର୍ଗା— ଶୟନଯାତ୍ରାଦିନ
(୪) ଶିବ ବା ରୁଦ୍ର- ନବକଳେବର ସମୟରେ

ତେଣୁ, ବିଷ୍ଣୁ ହୋଇ ମଧ୍ୟ ପଞ୍ଚଦେବତାରୂପରେ ସେ ପୂଜା ପାଆନ୍ତି । ଏଭଳି ଦେବତା ଭାରତର ଅନ୍ୟ କୌଣସି ପ୍ରସିଦ୍ଧ ଓ ପ୍ରାଚୀନ ମନ୍ଦିରରେ ନାହାନ୍ତି । (କଟକ ଜିଲ୍ଲାର ମହାବିନାୟକ ନାମକ 'ଲିଙ୍ଗ'ରେ ମଧ୍ୟ ଏଭଳି ପଞ୍ଚଦେବତା ପୂଜା ବିଧାନ ଅଛି । ଏହା ଜଗନ୍ନାଥଙ୍କ ପ୍ରଭାବ )

ତାପରେ, "କୁସୁମ-ମଧୁଗୀତାଦି-ରସିକେ" । 'କୁସୁମ' କହେ ଜଣାଇ ଦେଉଅଛି ଯେ, ଜଗନ୍ନାଥ ବଡ଼ ପୁଷ୍ପପ୍ରିୟ ଏବଂ ବର୍ତ୍ତମାନ୍, ପ୍ରତିଦିନ ତାଙ୍କୁ ଏକାଧିକ ଥର ନାନା ଫୁଲମାଳରେ ମଣ୍ଡିତ କରାଯାଏ । ରଥଯାତ୍ରାଦିନ ପହଣ୍ଡିବିଜେ ସମୟରେ ତାଙ୍କର 'ଟାହିଆ' ଯେ ଦେଖିଛି, ସେ ତାଙ୍କର ପୁଷ୍ପପ୍ରିୟତା କଥା ଜାଣିପାରିବ ।

ତାପରେ, 'ମଧୁ-ଗୀତା-ଢ' ( ବା ମଧୁ+ଗୀତ+ଆଢ ) ଶବ୍ଦର କଥାଯାଉ । ପଣ୍ଡିତମାନେ କହନ୍ତି— "ନାମୈକଦେଶଗ୍ରହଣେଽପି ନାମ-ଗ୍ରହଣମ୍" ଅର୍ଥାତ୍ ଗୋଟିଏ ନାମରେଥିବା ସବୁ ଅକ୍ଷର ଉଚ୍ଚାରଣ ନକରି, ଆମେ ଯଦି ସେ ନାଆଁର ଅଳ୍ପ କେତୋଟି ଶବ୍ଦ ବ୍ୟବହାର କରିବା, ତେବେ ମଧ୍ୟ ସଂପୂର୍ଣ୍ଣ ନାମଟିକୁ କୁହାଯାଇଛି ବୋଲି ଧରିବାକୁ ହେବ । ଜୟଦେବଙ୍କ ପ୍ରସିଦ୍ଧ କାବ୍ୟର ନାମ "ଗୀତଗୋବିନ୍ଦ" । ଏହି ଶ୍ଳୋକରେ ଥିବା 'ଗୀତ'ଶବ୍ଦ, ପୂର୍ବୋକ୍ତ ନିୟମରେ ଗୀତଗୋବିନ୍ଦ କାବ୍ୟକୁ ବୁଝାଏ । ତାହା "ମଧୁ" ଅର୍ଥାତ୍ ମଧୁର ଗୀତଗୋବିନ୍ଦରେ ଅଛି—

"ମଧୁର-କୋମଳ-କାନ୍ତ-ପଦାବଳୀଂ" ।

ଅର୍ଥାତ୍ ମଧୁର ବା ରସପୂର୍ଣ୍ଣ ଶବ୍ଦ ପ୍ରୟୋଗ ହେତୁରୁ ଉପଭୋଗ୍ୟ ହୋଇଥିବା ଗୀତଗୋବିନ୍ଦ କାବ୍ୟ ।

ଏହି ଗୀତଗୋବିନ୍ଦର ପଦମାଧୁର୍ଯ୍ୟ ସମଗ୍ର ସଂସ୍କୃତ ସାହିତ୍ୟରେ ସୁପରିଚିତ ଓ ସୁପ୍ରତିଷ୍ଠିତ ମଧ୍ୟ । ଜଗନ୍ନାଥ ମହାପ୍ରଭୁ ଏହି କାବ୍ୟ ପ୍ରତି ଏଭଳି ଆକୃଷ୍ଟ ହେଲେ ଯେ, କବି ନରସିଂହ, ଗୀତଗୋବିନ୍ଦକୁ ଜଗନ୍ନାଥଙ୍କ ଆଗରେ (ଶ୍ରୀମନ୍ଦିରରେ) ପ୍ରତିଦିନ ପଢ଼ାଯିବବୋଲି ବ୍ୟବସ୍ଥା କରିଦେଲେ । ଏହା ଏକ ଐତିହାସିକ ସତ୍ୟ । ପରେ, ଶ୍ରୀମନ୍ଦିର ଭିତରେ ଗଜପତି ପ୍ରତାପରୁଦ୍ରଦେବଙ୍କ ଏଭଳି ଆଦେଶ ପଥର ଦେହରେ ଖୋଦିତ ହୋଇ ଅଦ୍ୟାପି ରହିଅଛି । ପୂର୍ବରୁ ପ୍ରଚଳିତ ଗୀତଗୋବିନ୍ଦର ଗାନ ବା ପରିବେଷଣର ପ୍ରାଚୀନତା ପାଇଁ ଏହା ଏକ ଅକାଟ୍ୟ ପ୍ରମାଣ ।

ତାପରେ 'ଗୀତାଦି' ବା ଗୀତ ପ୍ରଭୃତି ଆଦି ଶବ୍ଦରୁ ଜଣାଯାଏ ଯେ, ଗୀତ ଅର୍ଥାତ୍ ଗୀତଗୋବିନ୍ଦ ଛଡ଼ା ସେ ଅନ୍ୟ ବିଷୟରେ ରସିକଥିଲେ । ତାହାହେଉଛି, 'ମାହାରି ନାଚ' । ଏହା ମଧ୍ୟ, ଜଗନ୍ନାଥଙ୍କ ବଡ଼ସିଂହାର (ଶୋଇବା ପୂର୍ବରୁ କରାଯାଉଥିବା ବେଶ) ବେଳେ ଅଭିନୀତ ହୋଇ ଆସୁଥିଲା । (କେତେକ କାରଣରୁ ଏବେ ଏହା ଟିକିଏ ଥମି ଯାଇଛି) । ତେବେ, ଏହି ମାହାରି ନାଚରୁ 'ଓଡ଼ିଶୀନାଚ' ଜନ୍ମଲଭକରି ସମଗ୍ର ପୃଥିବୀରେ ଆଜି ଆଦର ଲଭ କରିଅଛି ।

## ସପ୍ତମ ଶ୍ଲୋକ ସଂପର୍କରେ :—

ଜଗନ୍ନାଥଙ୍କର ଆଖି ଅନ୍ୟଦେବଦେବୀଙ୍କ ଆଖିପରି ନୁହେଁ କିମ୍ବା ମନୁଷ୍ୟଙ୍କ ଆଖିପରି ନୁହେଁ । ଆଖି ଦୁଇଟି ଗୋଲାକାର । ତେଣୁ ତାଙ୍କୁ କୁହାଯାଏ ଚକାଆଖି । ଆଖିକୁ ଟିକିଏ ନିରେଖିକରି ଚାହିଁଲେ, ତିନୋଟି ରଙ୍ଗ ତହିଁରେ ଥିବାକଥା ଜାଣିହୁଏ । ଆଖିର ଚାରିପଟେ ଅଛି ନାଲିଆ ରଙ୍ଗ । ଏହା ରଜୋଗୁଣର ଚିହ୍ନ । ବ୍ରହ୍ମା ହେଉଛନ୍ତି ସୃଷ୍ଟିକର୍ତ୍ତା । ଯେ ସୃଷ୍ଟି କରିବ, ସ୍ରଷ୍ଟା ଭାବରେ ସେ ନିଜକୁ ଅନୁଭବ କରିଥାଏ । ଏହି ଆତ୍ମବିଶ୍ୱାସ ବା ଅଭିମାନ ରଜୋଗୁଣାତ୍ମକ । ସୃଷ୍ଟିକର୍ତ୍ତା ବ୍ରହ୍ମା ଏହାର ଦେବତା । ତେଣୁ ଜଗନ୍ନାଥଙ୍କ ଆଖିର ଚାରିପଟେ ଯେଉଁ ନାଲିଆ ରଙ୍ଗ ରହିଅଛି, ଭକ୍ତମାନଙ୍କୁ ତାହା ସୂଚିତ କରିଦେଉଛି ଯେ, ଜଗନ୍ନାଥ ମହାପ୍ରଭୁ ଚାହିଁଦେଲାମାତ୍ରେ ଗୋଟିଏ ବ୍ରହ୍ମାଣ୍ଡ ସୃଷ୍ଟି କରିଦେଇପାରିବେ । ଏହା ବ୍ରହ୍ମାଙ୍କର ଗୁଣ ।

ଆଖିର ଅଧିକାଂଶ ଭାଗ ଧଳାରଙ୍ଗରେ ଶୋଭା ପାଉଛି । ଏହି ରଙ୍ଗ ସତ୍ତ୍ୱଗୁଣର ସୂଚନା ଦିଏ । ବିଷ୍ଣୁ ହେଉଛନ୍ତି ସୃଷ୍ଟିର ପାଳକ ବା ପାଳନକର୍ତ୍ତା । ତେଣୁ ଜଗନ୍ନାଥଙ୍କ ଆଖିର ଧଳାରଙ୍ଗକୁ ଚାହିଁଲେ ମନେହୁଏ, ସେ ହେଉଛନ୍ତି ବିଷ୍ଣୁ ଅର୍ଥାତ୍ ସଂସାର ପାଳନକର୍ତ୍ତା । ସତ୍ତ୍ୱଗୁଣର ରଙ୍ଗ ହେଉଛି ଧଳା ।

ଆଖି ମଝିରେ ରହିଛି କଳାବିନ୍ଦୁ । କଳାରଙ୍ଗ ହେଉଛି ତମୋଗୁଣର ସୂଚକ । ମହାଦେବ ଶିବହିଁ ରୁଦ୍ରଭାବରେ ସୃଷ୍ଟିର ସଂହାରକାରୀ । ତେଣୁ ଜଗନ୍ନାଥଙ୍କ ଆଖିର କଳାରଙ୍ଗ ସୂଚନା ଦିଏ ଯେ, ସୃଷ୍ଟିକୁ ସଂହାର କରିବାର ଶକ୍ତି ତାଙ୍କଠାରେ ଅଛି ଏବଂ ଆଖିପିଟିଲାକ୍ଷଣି ସେ ଏ ସାରା ସଂସାର ଧ୍ୱଂସ କରିଦେଇପାରନ୍ତି । ସତ୍ ଶବ୍ଦର ଅର୍ଥ ସୁନ୍ଦର । ତିନିଗୁଣର ରଙ୍ଗ ଯୁକ୍ତ ବା ଯୁକ୍ତ ହୋଇଥିବାରୁ, ସୁନ୍ଦର ଦେଖାଯାଉଛି । ଏହି ତିନି ରଙ୍ଗରୁ ସୂଚନା ମିଳେ ଯେ, ଜଗନ୍ନାଥଙ୍କଠାରେ ବ୍ରହ୍ମା, ବିଷ୍ଣୁ ଓ ଶିବ ସମନ୍ୱିତ ହୋଇ ରହିଛନ୍ତି । ଗୁଣମାନଙ୍କ ସଂପର୍କରେ ଭଗବଦ୍ ଗୀତାର ଚତୁର୍ଦ୍ଦଶ ଅଧ୍ୟାୟ ଦ୍ରଷ୍ଟବ୍ୟ ।

---

## ଅଧ୍ୟାପକ ବ୍ରହ୍ମାଙ୍କର ସଂସ୍କୃତ ରଚନାବଳୀ

୧ ଜଗନ୍ନାଥ-କୀର୍ତ୍ତନମ୍
୨ ଭଞ୍ଜପଞ୍ଚାଶିକା
୩ ଗୋପବନ୍ଧୁ ନକ୍ଷତ୍ରମାଳା
୪ ମହତାବ-ନକ୍ଷତ୍ରମାଳା
୫ ସତ୍ୟଭ୍ରମା-ନକ୍ଷତ୍ରମାଳା
୬ ଜବାହର-ନକ୍ଷତ୍ରମାଳା
୭ ଭାରତ ଗୌରବମ୍
୮ ଭାରତ ସଂହତିଃ
୯ ସଂସ୍କୃତ ଗୌରବମ୍
୧୦ ଶିଶୁଗୀତିକା
୧୧ ଗୌରୀଶଙ୍କର ଗୌରବମ୍
୧୨ କଲିକତା ପର୍ଯ୍ୟଟନମ୍
୧୩ ନବଦ୍ୱୀପ ପର୍ଯ୍ୟଟନମ୍
୧୪ ଓଡ଼ିଶା-ପର୍ଯ୍ୟଟନ-ନାଟକମ୍
୧୫ ସାଧନା-ସୌରଭମ୍
୧୬ ଭାରତୀୟ-ମନ୍ଦିରମାଳା
୧୭ ଜଗନ୍ନାଥ-ଜୟଗାନମ୍
୧୮ ଜଗନ୍ନାଥ ତାଣ୍ଡବସ୍ତୋତ୍ରମ୍
୧୯ ଉତ୍କଳୀୟ ମହାକବି-କୀର୍ତ୍ତନମ୍
୨୦ ସ୍ମୃତିଚାରଣମ୍
୨୧ ଜଗନ୍ନାଥ-ପ୍ରଶାନ୍ତ-ପଙ୍କଜମ୍

( ଏହା ବ୍ୟତୀତ ଓଡ଼ିଆ, ଇଂରାଜୀ ଏବଂ ହିନ୍ଦୀରେ ପ୍ରାୟ ୧୦୦ ଖଣ୍ଡ ବହିରୁ ପ୍ରାୟ ୫୦ ଖଣ୍ଡ ପ୍ରକାଶିତ । )